

# ଝରା-ବଉଳ

(ସାମାଜିକ ନାଟକ)


ରଚନା

ଡାକ୍ତର **ବସନ୍ତକୁମାର ମହାପାତ୍ର** ଏମ୍. ବି., ବି. ଏସ୍.

ସାଥୀ ପ୍ରକାଶନ
ଓଡ଼ିଆ ବଜାର, କଟକ



This book has been printed with the paper made available by the Govt. of India through the Govt. of Orissa at concessional rate.

ଦ୍ୱିତୀୟ ସଂସ୍କରଣ : ୧୯୭୭

କେତନ ଆର୍ଟ ପ୍ରିଣ୍ଟର୍ସ, କଟକ-୧

ମୂଲ୍ୟ—ଦୁଇ ଟଙ୍କା ମାତ୍ର

'ଝଙ୍ଗା ବଉଳ'କୁ ଧୂଳିରୁ ସାଉଁଟି ନେଇ
ସୋହାଗ, ମମତା ଦେଇ ଯିଏ ତୋଳି
ଧରିଥିଲେ—ଓଡ଼ିଶାର ମଞ୍ଚ,
ବେତାର ଓ ଚିତ୍ର ଜଗତର ସେଇ
ଶ୍ରେଷ୍ଠ କଳାକାର ବନ୍ଧୁ...

**ଶ୍ରୀ ଅକ୍ଷୟ କୁମାର ମହାନ୍ତି**ଙ୍କ ହାତରେ......

—ବାବୁଭାଇ

# ଅଭିମତ

"ଝଙ୍ଗା-ବଉଳ ଏକ ରୁଚିପୂର୍ଣ୍ଣ ଓ ମନୋରଞ୍ଜନ ନାଟକ—ଏଥିରେ ସନ୍ଦେହ ନାହିଁ ।'

**ପ୍ରଜାତନ୍ତ୍ର**, ତା ୧୯ । ୮ । ୬୩

ବସନ୍ତ ମହାପାତ୍ରଙ୍କର ବଳିଷ୍ଠ କଥାବସ୍ତୁ ଓ ସାବଲୀଳ ସଲାପ "ଝଙ୍ଗା-ବଉଳ"ର ସଫଳତା ପାଇଁ ମୁଖ୍ୟତଃ ଦାୟୀ ।

**ଗଣତନ୍ତ୍ର**, ତା ୧୧ । ୯ । ୬୩

"ଝଙ୍ଗା-ବଉଳ" ଖାଲି ଏକ ଉନ୍ନତ ସାମାଜିକ ନାଟକ ନୁହେଁ, ଉନ୍ନତ ସାହିତ୍ୟ । ବସନ୍ତ ମହାପାତ୍ରଙ୍କର ଲେଖନୀରେ ଫୁଲଚନ୍ଦନ ପଡ଼ୁ ।

—ସିନେମା—

# ପଦେ ଅଧେ—

ଝରା-ବଉଳ ମୋର ୧୯୫୫–୫୬ର ପରିକଳ୍ପନା । ତାହା ପ୍ରଥମ ଥର ପାଇଁ ମଞ୍ଚସ୍ଥ ହେଲ ଏବଂ ଆଜି ପ୍ରାୟ ଦଶବର୍ଷ ପରେ ପ୍ରକାଶ ପାଉଛି । ମୋ ପକ୍ଷରେ ଏହା ବଡ଼ ଆନନ୍ଦର କଥା ।

ଏହା ପ୍ରକାଶ ପାଇବା ମୂଳରେ "କିରଣ ପ୍ରକାଶନ"ଙ୍କ ଅନୁରୋଧ ବା ଦାବି ଏଡ଼ିପାରିଲି ନାହିଁ । ସେଇଥିପାଇଁ ମୁଁ ଶ୍ରୀ କାହ୍ନୁଚରଣ ପଟ୍ଟନାୟକଙ୍କ ନିକଟରେ କୃତଜ୍ଞ ।

ନାଟକ ଲେଖିବାରେ ଯେଉଁମାନେ ମୋତେ ସାହାଯ୍ୟ କଲେ, ପ୍ରେରଣା ଦେଲେ ସେମାନେ ହେଲେ,—ମୋର ଶ୍ରଦ୍ଧେୟା ନମ୍ମୁ, କଥାକାର ସନ୍ତାନ୍ଦ୍ର ଏବଂ କଳାମନ୍ଦିର ଉଦ୍ୟୋକ୍ତାଗଣ ।

ଗୀତକାର ଶ୍ରୀ ମନୋଜ ଦାସ, ଶ୍ରୀ ଭଗବାନ ନାୟକ ବର୍ମାଙ୍କୁ କୃତଜ୍ଞତା ଛଡ଼ା କଣ ବା ଦେଇପାରେ !!

"ଝରା-ବଉଳ"କୁ ଆମର ପାଠକ-ପାଠିକା, ସୌଖିନ୍ ନାଟ୍ୟାନୁଷ୍ଠାନମାନେ ଧୂଳିରେ ଲୋଟିବାକୁ ଦେବେନି—ଏତିକି କାମନା ।

ତା ୧୬ । ୭ । ୬୫
କଲ୍ୟାଣୀ,
କେଶରପୁର, କଟକ-୧

ଲେଖକ

## ସ୍ଥାନ—ଓଡ଼ିଶାର ଯେକୌଣସି ସହର ନିକଟସ୍ଥ ଦୁଇଟି ଗ୍ରାମ ଏବଂ କଲିକତା ସହର

ସମୟ—୧୯୫୩ ମସିହା

### ପ୍ରଥମ ଅଙ୍କ

୧ମ ଦୃଶ୍ୟ—ଶ୍ରୀକାନ୍ତର ଘର
୨ୟ ,, —ଜଙ୍ଗଲ ରାସ୍ତା
୩ୟ ,, —ବଉଳଗଛ ମୂଳ
୪ର୍ଥ ,, —ଶଶାଙ୍କ ପଟ୍ଟନାୟକଙ୍କ ଅଳିନ୍ଦ
୫ମ ,, —ବଉଳଗଛ ମୂଳ
୬ଷ୍ଠ ,, —ଗ୍ରାମପଥ (କ)
୭ମ ,, —ଶଶାଙ୍କ ପଟ୍ଟନାୟକଙ୍କ ବୈଠକଖାନା

### ଦ୍ୱିତୀୟ ଅଙ୍କ

୧ମ ଦୃଶ୍ୟ—କଲିକତାର ଶ୍ରୀକାନ୍ତ ଘର
୨ୟ ,, —ଶଶାଙ୍କ ଅଳିନ୍ଦ
୩ୟ ,, —ଶଶାଙ୍କ ଘର
୪ର୍ଥ ,, —ଗ୍ରାମପଥ (କ)
୫ମ ,, —ଶଶାଙ୍କ ଘର
୬ଷ୍ଠ ,, —ଶଶାଙ୍କ ଅଳିନ୍ଦ
୭ମ ,, —ବଉଳଗଛ ମୂଳ
୮ମ ,, —ଶଶାଙ୍କ ଅଳିନ୍ଦ
୯ମ ,, —ବଉଳଗଛ ମୂଳ

### ତୃତୀୟ ଅଙ୍କ

୧ମ ଦୃଶ୍ୟ— ଶ୍ରୀକାନ୍ତର ଗାଁ ଘର
୨ୟ ,, —ଶଶାଙ୍କ ଅଳିନ୍ଦ
୩ୟ ,, —ଶ୍ରୀକାନ୍ତ ଘର
୪ର୍ଥ ,, —ଶଶାଙ୍କ ଅଳିନ୍ଦ
୫ମ ,, —ଗାଁ ଦାଣ୍ଡ (ଖ)
୬ଷ୍ଠ ,, —ଶ୍ରୀକାନ୍ତ ଘର

# ପ୍ରଥମ ଥର ପାଇଁ ରୂପ ଦେଇଥିଲେ ଯେଉଁମାନେ

| | |
|---|---|
| ଶଶାଙ୍କ ପଟ୍ଟନାୟକ | ଭବାନୀଶଙ୍କର ପ୍ରହରାଜ |
| ପଶୁପତି ଦାସ | ଶୈଳେନ୍‌କୁମାର ମୁଖାର୍ଜୀ |
| ଜଗା | ରାମବଲ୍ଲଭ ଦାସ |
| ଶ୍ରେଷ୍ଠ ଭାନୁ | ମାହେଶ୍ୱର ମିଶ୍ର |
| ଭାନୁଶଙ୍କର | ଅକ୍ଷୟ ମହାନ୍ତି |
| ଶ୍ରୀକାନ୍ତ | ବାବାଜୀଚରଣ ସାହୁ |
| ସଛୀଦାଦା | ମୋହନକୁମାର ମହାନ୍ତି |
| ଲୁଲୁ ବାର୍ଣ୍ଣାର୍ଡ଼ | ନିକୁଞ୍ଜକିଶୋର ଦାସ |
| ନିର୍ମଳ | ଚନ୍ଦ୍ରଭାନୁ ପ୍ରସାଦ |
| ଭାଇଗ | |
| ଶ୍ରେଷ୍ଠ ମାଳା | କୁମାରୀ ମୀରା ରାୟ |
| ମାଳା | କୁମାରୀ ସୀତା ପାଲିତ |
| କଲ୍ୟାଣୀ | ରମାସୁନ୍ଦରୀ ଦେବୀ |

ସଙ୍ଗୀତ ରଚନା ଓ ପରିଚାଳନା—ଶ୍ରୀ ମନୋଜ ଦାସ ଓ ଶ୍ରୀ ଭଗବାନ ନାୟକ ବର୍ମା

ପ୍ରଚ୍ଛଦପଟ ସଙ୍ଗୀତ- ଅକ୍ଷୟକୁମାର ମହାନ୍ତି

ନିର୍ଦ୍ଦେଶନା—**ଅକ୍ଷୟ ମହାନ୍ତି**

ପରିବେଷଣ—**କଳାମନ୍ଦିର**

ସୌଖିନ ଓ ବ୍ୟବସାୟ ସୂତ୍ରରେ ଅଭିନୟ, ଲେଖକଙ୍କ ଅନୁମତିସାପେକ୍ଷ ।

—ପ୍ରକାଶକ

# ଚରିତ୍ରଲିପି

ଶଶାଙ୍କ ପଟ୍ଟନାୟକ···[ ଶିକ୍ଷିତ, ଆଭିଜାତ୍ୟଶୀଳ, ମିଲ୍ ମାଲିକ, ବୟସ ୩୦।୩୫ ଠାରୁ ୪୦।୪୫ ଭିତରେ ]

ପଶୁପତି ଦାସ···[ ଅର୍ଦ୍ଧଶିକ୍ଷିତ, ବୟସ ୪୦।୪୫, ଶଶାଙ୍କଙ୍କ ଗାଁ ଖବର ବୁଝାବୁଝି ପାଇଁ ଗୁମାସ୍ତା ]

ଜଗା··· [ ଶଶାଙ୍କବାବୁଙ୍କ ଚାକର, ବୟସ ୨୨।୨୩, ସ୍ୱଭାବତଃ ମାଇଚିଆ ]

ଭାନୁଶଙ୍କର··· [ ଉଚ୍ଚଶିକ୍ଷିତ, ଯୁବକ, ଶାନ୍ତଶିଷ୍ଟ, ବୟସ ୨୩।୨୪ ]

ଲୁଲୁ ବାର୍ଣ୍ଣାଡ଼୍··· [ ସ୍ୱଦେଶୀୟ ରପ୍ତାନି ଗୋଟିଏ ଦେଶୀ ସାହେବ, ବୟସ ୩୫।୩୬ ]

ଶ୍ରୀକାନ୍ତ··· [ ରାୟବଂଶର ଏକମାତ୍ର ଉତ୍ତରାଧିକାରୀ, ଉଚ୍ଚଶିକ୍ଷିତ, ଯୁବକ, ବୟସ ୨୩।୨୪ ]

ସଚ୍ଚୀଦାଦା··· [ ଶ୍ରୀକାନ୍ତର ଦାଦା, ବୟସ ୪୦।୫୦ ]

ନିର୍ମଳ··· [ ଶ୍ରୀକାନ୍ତର ପି. ଏ. ]

ଖାଇଗ··· [ ଜଣେ ଗ୍ରାମବାସୀ ]

କଲ୍ୟାଣୀ··· [ ଶଶାଙ୍କ ପଟ୍ଟନାୟକଙ୍କ ସ୍ତ୍ରୀ, ସାଦାସିଧା, ବୟସ ୨୪।୨୫ଠାରୁ ୩୦।୩୫ ଭିତରେ ]

ମାଳା··· [ ଶଶାଙ୍କ ପଟ୍ଟନାୟକଙ୍କ ଏକମାତ୍ର ଝିଅ, ବୟସ ୬।୭ରୁ ୧୬।୧୭ ]





# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଗୋଟିଏ ଦ୍ଵିମହଲା କୋଠାଘର, ସମୟ ରାତି, ଝରକା ବାଟେ ଦେଖାଯାଏ—ଆକାଶ, ଆକାଶରେ ମେଘ, ବିଜୁଳି—ମଝିମଝିରେ ଘଡ଼ଘଡ଼ି ମଧ୍ୟ ମାରୁଥାଏ ।

ଘରଟିରେ ଉପକରଣ ଥାଏ—ଖଟ, ର୍‍ୟାକ, ଟେବୁଲ, ଦୀପରୁଖା, ଦୀପ, ବଡ଼ ଥାଳି, ଶୁଖିଲା ଫୁଲହାର, ଅରୁଆଚାଉଳ, ଦୂବ, ବରକୋଳି ପତ୍ର, ପୋଡ଼ା ନଡ଼ିଆ ଓ ଭଲ ବିଛଣା ।

ସବୁ ଆସବାବପତ୍ର ଧୂଳିଧୂସରିତ ଓ ଅବହେଳିତ । ମଞ୍ଚରେ ଅନ୍ଧକାର—କେହି ନ ଥାନ୍ତି । ବାହାରୁ ଦାଣ୍ଡକବାଟ 'ଖଟ ଖଟ' ଶୁଭେ । ସିଡ଼ିଉପରୁ ଲଣ୍ଠନଟି ଧରି ଓହ୍ଲେଇ ଆସନ୍ତି ବୃଦ୍ଧ ସଚ୍ଚୀ—ବୟସ ୬୦ ପାଖାପାଖି—ଶୁଖିଲା ମୁହଁ । ମଞ୍ଚ ଅତିକ୍ରମ କରି ସଚ୍ଚୀ ଯାଇ କବାଟ ଫିଟାନ୍ତି । ଘର ଭିତରକୁ ପଶିଆସେ ଜଣେ ଯୁବକ—ମୁହଁରେ ଦାଢ଼ି—ଲୁଗାପଟା ଓଦା ]

ସଚ୍ଚୀ—ତମେ ଏ ମେଘ ଅନ୍ଧାର ରାତିରେ ?

ରାନୁ - ଏଇଠି ରାତିଟା ରହିବ ।

ସଚୀ—ଏଇଟା ଗୋଟାଏ ଭୂତକୋଠ । ଏଠି କେହ୍ବ ରହନ୍ତି ନ !

ଭାନୁ ଆପଣ···ଆପଣ ତ ପୁଣି ରହୁଛନ୍ତି !

ସଚୀ—ମୁଁ ରହିବନ ? କୁରୁବଂଶର ଶେଷ ପର୍ଯ୍ୟନ୍ତ କଏ ବଞ୍ଚି ରହିଥିଲ ? ଶକୁନ !
( ହସ )

ଭାନୁ—କବାଟଟା ମେଲା ଅଛି !

ସଚୀ—ଆଉ । ସେ ଆସିବ ବୋଲି ଭାବୁଛ ? ଆଜିକି ବାରବର୍ଷ ହେଇଗଲା, ଦାଣ୍ଡଲୋକଙ୍କ କଥାରେ କେତେ କବାଟ ଖୋଲି, ତା'ର ବାଟ ଗୁହିଁ ବସିଛି, ତଥାପି ସେ ଆସିନ···ଆଉ ଆଜି ସେ ଆସିବ ? ତୁମେ ଜାଣିଛ, ଏଇ କୋଳରେ କାଖେଇ, ଏଇ କାନ୍ଧରେ ବସାଇ ତାକୁ କେତେ ଖେଳେଇଛି; କେତେ ଅଳି ଅରଦଳି ତାର ମୁଁ ସହିଛି···ସେ ମତେ ଡରେଇବ, ନା ? ( ହସ ) ସେ ତମରମାନଙ୍କ ପରି ସୁବିଧାବାଦୀ ଲୋକଙ୍କୁ ଡରେଇବ । ତମେମାନେ ସ୍ୱାର୍ଥପର, ଅବିବେକୀ. ସୈତାନ···ବାହାରି ଯାଅ ! ଆଶ୍ରୟ ନାଁ'ରେ ତମେ···ଗୁଲିଯାଅ ଏଠୁ !

ଭାନୁ (pause) [ଲଣ୍ଠନ ନେଇଛି ସଚୀଙ୍କ ହାତରୁ—ଖଟପାଖକୁ ଯାଇଛି—ଗଦିରେ ହାତ ମାରିଛି—ଧୂଳି ସବୁ—ଫୁଲ ହାର ସବୁ ହାତରେ ମଳି ଦେଇଛି । ] ଏଇଠି ସେଦିନ ଥିଲା ଏଇ ଖଟ । ତୁମେ ନା ସେଦିନ ବୁକୁ ପାରି ଦେଇଥିଲ ଦୁଇଟି ନୂତନ ଯାତ୍ରୀଙ୍କୁ ଆଶ୍ରୟ ଦେବାକୁ ? ( ଆକାଶରେ ଘଡ଼ଘଡ଼ି ଓ ବିଜୁଳି ) ଏଇଠି ଥିଲା ଦୁବ, ଅରୁଆ ଗୁଉଳ, ବରକୋଳି ପତ୍ର, ପୋଡ଼ା ନଡ଼ିଆ । ତୁମର ସାକ୍ଷ୍ୟରେ ସେମାନେ ଗଢ଼ିଥାନ୍ତେ ତାଙ୍କର ମଧୁବାସର । ( ଆଗେଇ ଆସି କୁଳଦୀପ ପାଖକୁ ) ତୁମେଇ ସେଦିନ ଜୀବନ୍ୟାସ ପାଇଥିଲ, କୁଳଦୀପ ! ତୁମକୁ ସାକ୍ଷୀ ରଖି, ଦୁଇଟି ଜୀବନ ଗୋଟିଏ ବାଟରେ ଆଗେଇ ଗୁଲିଥାନ୍ତେ । ସେଦିନର ସେଇ ମେଘଅନ୍ଧାର ରାତିର ବୁକୁ ଚିରି ଯେତେବେଳେ ଝଡ଼ ଝଞ୍ଜା ନୃତ୍ୟମୁଖର ଥିଲେ, ସେତେବେଳେ ତମର ସେ ନିଷ୍ପାପ ଶିଖା ଲିଭିଯାଇ ନ ଥିଲା । ତମେ ଥିଲ ତାଙ୍କର ପଥ-ଦ୍ରଷ୍ଟା । ଗୋଟିଏ ଯୁଗ ପରେ ତମର ଅସ୍ତିତ୍ୱ ଅବଲୁପ୍ତ ହୋଇନ ? ଆଚ୍ଛା, ଏଇଠି ଯେଉଁ ବଡ଼ ଫଟୋଟି ଥିଲା ? ?

[ ଲଣ୍ଠନ ଟେକ ଉପର କାନ୍ଥକୁ ଗୁହେଁ ସେ]

ସଚୀ—( ହସି ଉଠି ) କହୁଥିଲ ନା, ସେ ତମମାନଙ୍କୁ ଗ୍ରହଣ କରିବ ନା ଦେଖିଲ ତ ! ଆରେ, ତା'ର ଘର ଏ···ଏଇ ମାଟି ତାକୁ ପ୍ରଥମେ ଆଶ୍ରୟ ଦେଇଛି···ଏଇ ମାଟିରେ ସେ ଖେଳିଛି, ବୁଲିଛି···ଏଇ ପବନରେ ସେ ବଞ୍ଚିଛି; ସେ କ'ଣ ଗ୍ରହଣ କରିବ ? ଏତେ ଚଞ୍ଚଳ ଏ ମାୟାମମତା କାଟି ସେ କ'ଣ ରହିପାରିବ ?

ଭାନୁ— ଦାଦା !

ସଚୀ—ଦା···ଦା ! ( ପିଲାଙ୍କ ପରି କାନ୍ଦିଉଠି ଛନ୍ତି ସେ ) କେତେ ଆଶାର ସ୍ୱପ୍ନ ଦେଖିଥିଲି ମୁଁ । ମୋ ଘରର ଲକ୍ଷ୍ମୀ, ମୋ ବଂଶର ମଣି, ଆଜିକି ୧୬ବର୍ଷ ହୋଇଗଲା···ଭାଇ ମରିଥିଲେ, ମୁଁ ସହିଥିଲି; ଭାଉଜ ଗଲେ, ତା'ବି ସହିଲି—ହେଲେ ସେ ଚାଲିଗଲା କାହିଁକି, କିଏ ତୁ ? କିଏ ତୁ···ମତେ ଦାଦା ଡାକିଲୁ ?

ଭାନୁ—ମତେ ଚିହ୍ନି ପାରୁ ନା ? ମୁଁ ପରା ଭାନୁ !! (ଆକାଶରେ ଘଡ଼ଘଡ଼ି)

ସଚୀ—ଭାନୁ !!! ( ତାଙ୍କୁ ଚିକି ଧରି ନେଲେ ) କାହିଁକି ଆସିଛୁ ? କ'ଣ ପାଇଲେ ତୁ ଶାନ୍ତି ପାଇବୁ ? ଏଇ ଜୀବନଟାକୁ ? ନେ, ନେ, ନଉନୁ ! ହେଲେ ତାକୁ ମତେ ଫେରେଇ ଦେ । ଏ ଜମିବାଡ଼ି, ଟଙ୍କା ସୁନା, ସବୁ ଦେବି । କହୁନୁ କାହିଁକି ? ଜବାବ ଦେ ! କି ଅପରାଧ ତୋର ସେ କରିଥିଲା ? କି ଅପରାଧ କରିଥିଲା ଏଇ ରାୟବଂଶ, ଆଉ ତା'ର ବୃନ୍ଦାବନ ? କାହିଁକି ତା'ର କୁଳଦେବତା ଆଜି ଅପୂଜା ରହିବ ? ବୃନ୍ଦାବତୀ ପାଖରେ କାହିଁକି ତା'ର ସନ୍ଧ୍ୟାବତୀଟାଏ ଜଳିବନି ? କାହିଁକି ତା'ର ପିତୃପୁରୁଷ ପିଣ୍ଡପାଣି ପାଇବେନି ?? ଜବାବ ଦେ, ଭାନୁ !

ଭାନୁ—ବେଶ୍, ଫେରିଚାଲ ସେଇ ହଜିଲା ଅତୀତକୁ···ସେଇ ଝରା ବଉଳ ତଳକୁ ।

[ ସ୍ଲାଇଡ୍ ଆରମ୍ଭ ହେଲା । ଭିତରୁ ଶୁଭିଲା ଗୋଟାଏ ଝିଅର ହସ ଏବଂ ଗୁରୁଗମ୍ଭୀର ସ୍ୱରରେ ଗୀତ ]

—ଆସ୍ତେ ଆସ୍ତେ ଆଲୋକ ଲିଭିଯାଏ—

## ଦ୍ୱିତୀୟ ଦୃଶ୍ୟ

[ ସମୟ—ମେଘଅନ୍ଧାର ରାତ । ଜଙ୍ଗଲ ପଥ । ପ୍ରଚ୍ଛଦପଟରୁ ଗୀତ ଶୁଭୁଛି । ଆସ୍ତେ ଆସ୍ତେ ଚାଲିଛନ୍ତି ଭାନୁ ଓ ସଚୀ—ହାତରେ ଲଣ୍ଠନ । ମଞ୍ଚ ଅନ୍ଧକାର ]

— ଗୀତ—

## ତୃତୀୟ ଦୃଶ୍ୟ

[ ସେଇ ମେଘ ଅନ୍ଧାର ରାତି । ଗାଁ'ର ବଉଳ ଗଛମୂଳ, ପଛରେ ଆକାଶ, ମଞ୍ଚ ଅନ୍ଧକାର । ପଶିଆସିଲେ ସଚୀ ଆଉ ଭାନୁ, ହାତରେ ଲଣ୍ଠନ ]

ଭାନୁ—କାଲି ପରି ଲାଗୁଛି, ସେଦିନ ସଞ୍ଜ ହୋଇ ନ ଥାଏ, ମୁଁ ପଢୁଥାଏ ଅଷ୍ଟମ ଶ୍ରେଣୀରେ ଆଉ ମାଳା ତୃତୀୟରେ !

[ ଲାଇଟ୍ ହଠାତ୍ ଲିଭିଗଲା—ଦେଖାଗଲା ସେଇ ବଉଳଗଛ ମୂଳ, ସମୟ ସୂର୍ଯ୍ୟାସ୍ତ । ଭାନୁ ବସି ଗୋଡ଼ ହଲଉଥାଏ—ମାଳା ତା'ର ହାର ଖୋଜି ଖୋଜି ବ୍ୟସ୍ତ ହେଲା, ମଣ୍ଡପ ଉପରେ ବନ୍ଧ ବସ୍ତାନ । ]

ମାଳା—ଏଁ ···

ଭାନୁ—( ବଉଳ କୋଳି ଖାଉଥାଏ )

ମାଳା—( ପାଖକୁ ଆସି ) ଏ···

ଭାନୁ—( ଟିକିଏ ଚାହିଁ ପୁଣି କୋଳି ଖାଏ )

ମାଳା—( ଭାନୁକୁ ଧରି ) ଏ···
ଭାନୁ—ଉଁ······ ( ନୀରବ )
ମାଳା—ଡାକଲେ ଶୁଭୁନି··· ?
ଭାନୁ – କାହାକୁ ?
ମାଳା—(ନୀରବ )
ଭାନୁ—(ନୀରବ)
ମାଳା- ଏ···ମୁଁ ପରା କହୁଛି ।
ଭାନୁ ମୁଁ ···ପରା ଶୁଣୁନି !
ମାଳା—କାହିଁକି ?
ଭାନୁ—ମୋର କ'ଣ ନାଁ ନାହିଁ ?
ମାଳା—ନାଁ ଟା ପରା ମୋ ମନେ ନାହିଁ ।
ଭାନୁ – ସିମିତି ଡାକଲେ ମୁଁ ଶୁଣେ ନାହିଁ । ( ନିଜ କାମରେ ଲାଗିଲା )
ମାଳା – ଏ···
ଭାନୁ ମୋ ନାଁ ଏ ନୁହେଁ, ବୁଝିଲୁ !
ମାଳା—ନା ।
ଭାନୁ—ନା ! !
ମାଳା ନାଁଟା ପରା ମୁଁ ଜାଣିନି !
ଭାନୁ—ମୁଁ ବି ତତେ ଜାଣିନି । ଏଥର ଯା···
ମାଳା—ନାହିଁ···
ଭାନୁ—କାହିଁକି ? ନାହିଁ କାହିଁକି ? କ'ଣ ଦରକାର ମୋ'ଠି ?
ମାଳା – ମୋ ପୋହଳା ମାଳିଟା···
ଭାନୁ କ'ଣ ହେଲା ?
ମାଳା – ଏଇଠି କୋଉଠି ପଡ଼ିଯାଇଛି···
ଭାନୁ – ଭଲ ହେଇଛି ଏତେ ପିଲା ଖେଳୁଥିଲେ ପରା···
ମାଳା – କେହି ନେଇ ନାହାନ୍ତି ।
ଭାନୁ – ତାହାହେଲେ ଖୋଜିକରି ନେଇ ଯା –

ମାଳା—( ଠିଆହୋଇ ରହିଲା )

ଭାନୁ—( ତେଲ ମାରି କୋଳି ପାରି ମାଳାକୁ ଦେଖେଇ ଦେଉଥାଏ ) କି ବଢ଼ିଆ ମିଠା କୋଳି ଏଗୁଡ଼ା !

ମାଳା—( ମୁହଁ ଘୋଡ଼ାଇଦେଲା )

ଭାନୁ—ଖାଇବୁ କଲେ ମାଳା ! କଲେ, କହିଲୁ ପରା ଖୋଳିକରି ନେଇ ଯା···ଆଉ ଠିଆହେଲୁ କାହିଁକି ?

ମାଳା—( କାନ୍ଦିଲା ପାଟିକରି )

ଭାନୁ—ଓଃ, ଲୁହ ! ଟିକିଏ କଥାରେ ଖାଲି ଲୁହ ବୋହିପଡ଼ୁଚ୍ଛି ସ୍ତ୍ରୀ'ର । ମୋର ଯେମିତି ଆଉ କିଛି କାମ ନାହିଁ ! ଆଜି ବହି ଖୋଳିଦିଅ, କାଲି କୋଳି ପାରିଦିଅ, ଫୁଲ ତୋଳିଦିଅ, ଆଉ ପଅରି ଦିନ ପୋହିଲା ମାଳି ଖୋଳିଦିଅ···ଦିନ୍ ଖାଲି ଏଇୟା କରୁଥିବ, ଆଉ ତୁ ଦରକାରୀ ଜିନିଷଟା ପାଇ ଘରକୁ ପଳେଇଯିବୁ ।

( ଅନ୍ତରାଳରେ ସନ୍ନ୍ୟାସୀ ଗୀତ ପଦେ ଗାଇଲେ — "ରାଧାଙ୍କ ମାନକୁ ନେଇ")

ଭାନୁ—ପୁଣି କାନ୍ଦ ? ଖାଲି ମତେ ଦେଖାଇଦେବାପାଇଁ କାନ୍ଦୁଚ୍ଛୁ ! ଖାଲି ମିଛ କାନ୍ଦ···ଛି ଛି, ଏ ଝିଅଗୁଡ଼ା ଏଡ଼ିକି ନାକକାନ୍ଦୁରୀ !

ମାଳା—( ପୁଣି ବେଶି କାନ୍ଦିଲା । ଅନ୍ତରାଳରୁ ଗୀତର ଅନ୍ୟପଦ )

ଭାନୁ—ସଞ୍ଜ ହେଲଣି, ବାବାଜୀଙ୍କ ଭଜନ ଶୁଭୁନ ? ମୁଁ ମୋର ଘରକୁ ଯାଉଚ୍ଛି । ଯାହାକୁ ଡର ମାଡ଼ିବ ସିଏ ତା ଘରକୁ ଯାଉ । ( ଭାନୁ ଚାଲିଯାଉଥିଲା )

ମାଳା—( କାନ୍ଦ ବନ୍ଦ କରି ଭାନୁକୁ ଧରି ପକେଇଲା )

ଭାନୁ—ମତେ ଛାଡ଼—ବେଳ ବୁଡ଼ିଲାଣି ପରା ! ବାପା ଡେଣେ ଗାଳି ଦେବେ । ମୁଁ ଯିବି ।

ମାଳା—ନାଇଁ···

ଘନୁ—ନାଇଁ, ମାନେ ? ମତେ ଗୁଡ଼ଉଛନ ତ ! ନହାତ ତା'ହେଲେ ମାଳଟା ଖୋଜିଦବାକୁ ହବ । ବେଶ୍, ଦେଖିଲୁ . ସେଇଠି ଗୋଟାଏ କ'ଣ ଲାଲ ହେଇ ଦେଖାଯାଉଛୁ···

ମାଳା—( ଦଉଡ଼ିଯାଏ ଖୋଜିବାକୁ )

ଘନୁ—( କୋଳି ଖାଇବାରେ ଲାଗେ । ଅନ୍ତରାଳରୁ ଗୀତର ଶେଷ ପଦ ଶୁଭେ )

ଘନୁ—କ'ଣ, ପାଇଲୁ ?

ମାଳା—( ମୁଣ୍ଡ ହଲାଇ ନାହିଁ କରେ, ଅନ୍ତରାଳରୁ ଗୀତ ଶେଷ ହୁଏ । )

[ ଘନୁ ଅନେକ ଜାଗାକୁ ପଠାଏ ମାଳାକୁ—ମାଳା ପାଏନି—ଶେଷରେ ଠିଆହୋଇ କାନ୍ଦେ । ଘନୁ ପକେଟରୁ ମାଳା ବାହାର କରି ମାଳାକୁ ପିନ୍ଧାଇଦିଏ । ଆକାଶରେ ଘଡ଼ଘଡ଼ି ମାରେ—ଆକାଶରେ ମେଘ ଘୋଟି ଆସେ । ]

ମାଳା—( ଥରେ ମାଳକୁ ଥରେ ଘନୁକୁ ଅନେଇ ଚାଲିଯାଏ । )

ଘନୁ—ମାଳା, ମେଘ ଅନ୍ଧାର, ଏକା ଯାଆ ନା···!

( ଆକାଶରେ ବିଜୁଳି ମାରେ )

ମାଳା—( ଫେରିଆସି ଛିଡ଼ାହୋଇ ହୋଇ ଦଉଡ଼ି ଦଉଡ଼ି ଚାଲିଯାଏ )

ଘନୁ—( ଦଉଡ଼ି ଯାଇ ଡାକେ ) ମାଳା··· !

—ଆଲୋକ ହଠାତ୍ ଲିଭିଗଲା—

## ଚତୁର୍ଥ ଦୃଶ୍ୟ

[ ସେଇ ମେଘ ଅନ୍ଧାର । ଶଶାଙ୍କ ପଟ୍ଟନାୟକଙ୍କ ଅଳିନ୍ଦ । ମଞ୍ଚ ଆଲୋକିତ ହେବା ପୂର୍ବରୁ କଲ୍ୟାଣୀର ସ୍ୱର ]

କଲ୍ୟାଣୀ—ମା···ଳା···!

ଜଗା—( ଅନ୍ୟ ଦିଗରୁ ଆସିଲା )

କଲ୍ୟାଣୀ—କ'ଣ ପାଇଲୁ, ଜଗା ?

ଜଗା—ନାହିଁ ସାନ୍ତାଣୀ, ସବୁଆଡ଼େ ଖୋଜି ସାରିଲିଣି ! କେଉଁଠି ତ ପାଇଲି ନାହିଁ !

କଲ୍ୟାଣୀ—କୁଆଡ଼େ ଗଲେ ସେ ତେବେ ?

ଜଗା ଇସ୍କୁଲରୁ ନେଉଁଟି ଏଇଠି ତ ବନ୍ଧ ନସ୍ତାନ ମତେ ଦେଲେ । ମୁଁ ଜଳଖିଆ ଆଣୁ ଆଣୁ କୁଆଡ଼େ ତ ପଳେଇଲେ ! ମୁଁ ଯେତେ ଡାକିଲି କ'ଣ ଶୁଣିଲେ ?

କଲ୍ୟାଣୀ ସ୍କୁଲକୁ ଯାଇଥିଲୁ ?

ଜଗା—ମୁଁ ଯାଇନ ଯେ, ହେଲେ ଗୁମାସ୍ତା ଯାଇଛନ୍ତି । ମୁଁ ଟୋକାଆଡ଼େ ଯାଇଥିଲି । ଗୁମାସ୍ତାଏ ଏଇନେ ଫେରୁଥିବେ କି କ'ଣ ।

କଲ୍ୟାଣୀ ଅନ୍ଧାର ହେଲଣି, ମେଘ ଉଠେଇଛି, କୁଆଡ଼େ ଗଲେ ସେ ? କେଉଁଠି ଥିବ ?

ଜଗା—ତମେ ବ୍ୟସ୍ତ ହ'ନ ସାନ୍ତାଣୀ ! ସାଙ୍ଗମେଳରେ ପଡ଼ି ଇସ୍କୁଲ ଆଡ଼େ ଯାଇଥିବେ କି କ'ଣ । ଏଇନେ ଗୁମାସ୍ତା ଧରି ଆଣିବେନ ! ଭାରି ଅଝଟିଆ ହୋଇଚନ୍ତି ମ, ମୋର କଥା ଧରିଥିବେ ଶିର କଟିଯିବ ପଛେ ଛାଡ଼ିବେନ ।

ପଶୁପତି—କିରେ ଜଗା, କ'ଣ, ପାଇଲୁ ?

କଲ୍ୟାଣୀ—କ'ଣ, ତମେ ବି ପାଇଲ ନି ?

ପଶୁପତି --କୁହନ୍ତୁନ ସାନ୍ତାଣୀ, ଖୋଜି ଖୋଜି ନାକେଦମ୍ ହେଲିଣି । ଇସ୍କୁଲରେ ମାଷ୍ଟରଙ୍କୁ ଯାଇ ପଚାରିଲି । ହେଲେ କେହି କିଛି ଖବର ଦେଇପାରିଲେ ନି ।

କଲ୍ୟାଣୀ—ତେବେ ଗଲେ କୁଆଡ଼େ ?

ପଶୁପତି—ମୁଁ ଠିକ୍ ଜାଣିଛି, ଏ ଛତରା ଛୁଆଙ୍କ ସାଥିରେ ସେ ବଉଳତୋଟାକୁ କୋଳି ଖାଇବାକୁ ଯାଇଥିବେ ।

କଲ୍ୟାଣୀ—ଏଁ ! ଏ ଝଡ଼ ଅନ୍ଧାରରେ ସେ ଡୋଙ୍ଗା ଭିତରେ ଥିବ ! ବିଜୁଳି ଚକ୍ ଚକ୍ ମାରୁଛି, ଘଡଘଡ଼ି ମାରୁଛି; ଡୋଙ୍ଗାଟା ଭିତରେ ସେ କେମିତି ରହିବ ? ଠାକୁରେ, ମୋ ମା'କୁ ମତେ ଫେରେଇଦିଅ । ( ଘଡ଼ଘଡ଼ି ମାରିଲା ) ଆରେ ଗୁମାସ୍ତା, ଜଗା, ଆରେ ଶୁଣିହଛ କ'ଣ ? ଯାଅ ଟିକିଏ, ଆଲୁଅ ନେଇ ଯାଅ, ତାକୁ ଖୋଜିଆଣ ।

ପଶୁପତି—ତମେ ଟିକିଏ ଥୟ ହେଲ ମା, ତମେ ଖାଲି ଠାକୁରଙ୍କୁ ଡାକ, ଆମେ ଯାଉଛୁ...

କଲ୍ୟାଣୀ—ନାଇଁ, ନାଇଁ, ତମେ ଚାଲ, ତମ ସାଥିରେ ମୁଁ ଯିବି ।

ପଶୁପତି କ'ଣ ହେଲା ମା, ତମେ ଯିବ ? ଆମେ ସବୁ କଣ ମରିଗଲୁଣି ? ଘରେ ଏତେ ଚାକର ବାକର ଥାଉ ଥାଉ ତମେ ମାଆ ପଦାକୁ ବାହାରିବ ? ସାଆନ୍ତେ ଶୁଣିଲେ କ'ଣ କହିବେ କହିଲ ?

କଲ୍ୟାଣୀ—ଯିଏ ଯାହା କହୁ ପଛେ...

ପଶୁପତି—ଭୁଲି ଯାଅନା, ସାଆନ୍ତାଣୀ ! ଏ ଘରର ତ ଫେର୍ ମାନସମ୍ମାନ ଅଛି ! ଲକ୍ଷେ ଦାସୀ ପରିବାରି ଥାଉ ଥାଉ ଏ ଘରର ବୋହୂ ସାଆନ୍ତାଣୀ...ନାଇଁ ମା, ଆମେ ଯାଉଛୁ । ଚାଲ୍ ଜଗା...( ଜଗା ଲଣ୍ଠନ ଆଣିବାକୁ ଗଲାବେଳେ )

ମାଳା—ବୋଉ ! ( ଦଉଡ଼ି ଦଉଡ଼ି ଆସିଲା )

କଲ୍ୟାଣୀ—ମୋ ମା, କୁଆଡ଼େ ଥିଲୁ ଏତେବେଳ ଯାଏ ? ମତେ କ'ଣ ଟିକିଏ ଶାନ୍ତିରେ ମରିବାକୁ ଦେବୁନି ? କାହିଁକି ଏମିତି ଜାଳେଇ ପୋଡ଼େଇ ମାରୁଛୁ କହିଲୁ ?

ପଶୁପତି—ଓହୋ, ଗୋଟାଏ ଦେହ ଗଲା ! ( ବସିପଡ଼ିଲା )

ଜଗା—ନୀଳାଚଳନାଥ, ତମକୁ କୋଟି ଜୁହାର ! ଏ ଅନ୍ଧକାରରେ ଦେହ ନେଉଥିବେ ବୋଲି ମୋର ଭରସା ନ ଥିଲା ।

କଲ୍ୟାଣୀ—ଏତେବେଳଯାଏ କୁଆଡ଼େ ଥିଲୁ ତୁ ?

ମାଳା—ଡୋଙ୍ଗାକୁ ଯାଇଥିଲି !

କଲ୍ୟାଣୀ—ଏଇବେଳେ କ'ଣ ସେଠିକି ଯାଆନ୍ତି ?

ମାଳା—ନାହିଁ ମ ବୋଉ, ବନରେ କୋଳି ଖାଇବାକୁ ଯାଇଥିଲି ଯେ, ଘରେ ଆସି ଦେଖେ ତ, ମୋ ପୋହଳା ମାଳିଟା ବେକରେ ନାହିଁ । ବହି ବସ୍ତାନି ଥୋଇ ତ ଦଉଡ଼ିଲି··· ।

କଲ୍ୟାଣୀ—ଏ ସନ୍ଧ୍ୟାବେଳେ, ଅନ୍ଧାରଟାରେ ଯାଇ ନ ଖୋଜିଥିଲେ କ'ଣ ହୋଇ ନ ଥାନ୍ତା ! ହଜିଲେ ହଜିଲା, ପୋହଳା ମାଳିଟାଏ ତ !

ପଶୁପତି—ଦେଖିଙ୍କ କଥା ଶୁଣ ! ଲକ୍ଷ ଲକ୍ଷ ଟଙ୍କା ଉଡ଼ିଯାଉଛି···ଏଇ ସାମାନ୍ୟ ପୋହଳା ମାଳିଟା ପାଇଁ···ଛି ଛି ଛି !

କଲ୍ୟାଣୀ—କାଲି ସକାଳେ ଯାଇ ଖୋଜି ଆଣିଥିଲେ କ'ଣ ହୋଇ ନ ଥାନ୍ତା ? ତୁ କାହିଁକି ଯାଇ ଖୋଜୁଥିଲୁ ?

ମାଳା—ନାହିଁ ମ ବୋଉ, ମୁଁ ଖୋଜିନ ।

କଲ୍ୟାଣୀ—ଆଉ ?

ମାଳା—ସିଏ ମତେ ଦେଲା ।

କଲ୍ୟାଣୀ—କିଏ ତତେ ଦେଲା ? ତା ନାଁ କଣ ?

ମାଳା—ଆରେ, ସେଇ ମ ! ସେଦିନ ମୁଁ କହୁ ନ ଥିଲି, ସିଏ ମୋ ବହି ଖୋଜି ଦେଇଥିଲା, ସିଏ ମତେ ଫୁଲ ତୋଳିଦିଏ, କୋଳି ପାରିଦିଏ ମ···ନାଁଟା ପରା ମନେ ପଡ଼ୁନି ।

କଲ୍ୟାଣୀ—ମଲା, ସିଏ ତୋର ଏତେ କାମ କରୁଚି, ତା ନାଁଟା ତୁ ଜାଣିନୁ !

ମାଳା—ଭଦ୍ୟାରଣ ଲୋ ବୋଉ, ତା ନାଁଟା ପରା ମନେ ପଡ଼ୁନି ।

ଜଗା—ଦେଖିଙ୍କ କଥା ଶୁଣ !

ପଶୁପତି—ଆଚ୍ଛା ଦେଖ, ତମେ ଯଦି କୋଉଦିନ ହଜିଯାଅ, ତା ହେଲେ ତାକୁଇ କହିଲେ ଖୁବ ଭଲ ହେବ···ସେଇ ତମକୁ ଖୋଜି ଆଣିବ ।

କଲ୍ୟାଣୀ—ତା ଘର କୋଉଠି, ମା ?

ମାଳା—ଜାଣିନି ତ !

କଲ୍ୟାଣୀ—କିଛି ଜାଣିନୁ ? ହଉ, ଏଥର ତାକୁ ଆମ ଘରକୁ ଥରେ ଡାକିଆଣିବୁ ।

ମାଳା—ତୁ କିଛି ଜାଣିନୁ ବୋଉ, ମୁଁ ଡାକିଲେ ପରା ସେ ମନାକରେ ।

କଲ୍ୟାଣୀ—ନାଇଁ, ତୁ କହୁଚୁ ବୋଉ ଗୁଣ ପକେଇ କହୁଛୁ । ଦେଖିବୁ, ସେ ନଶ୍ଚେ ଆସିବ ।

ମାଲା—ଇ ମା, କି ଦୁଷ୍ଟ ସେ ! ମାଳଟାକୁ କେତେବେଳୁ ପାଇ ସେ ଲୁଚେଇ ରଖିଛୁ । ମୁଁ ଖୋଜି ଖୋଜି ଥକଗଲି, ମତେ କିଛୁ କହୁଲନ । ମୁଁ ଯେମିତ କାନ୍ଦୁଛୁ ମୋ ବେକରେ ସେମିତ ପିନ୍ଧେଇଦେଲା ।

ପଶୁପତ—ଏଁ, ଆମ ଦେଈଙ୍କର ତା'ହେଲେ ମାଲା ପିନ୍ଧା ହୋଇ ସ୍ୱୟମ୍ବର ହୋଇଯାଇଛୁ !

ଜଗା—ହଁ, ଯାହା କହୁଲ ଘୁମାସ୍ତାଏ···

ମାଲା—ସ୍ୱୟମ୍ବର କ'ଣ ବୋଉ ?

ଜଗା—ଏଁ, ସ୍ୱୟମ୍ବର କ'ଣ ତମେ ଜାଣିନ, ଦେଈ ? ବେଦୀ ବନ୍ଧା ହେବ, ଦୋଳ ମୁକୁଟ ପିନ୍ଧବ, ହଳଦୀ ନଗେଇବ, ବାଡ଼ୁଅ ପାଣି ଗାଧୋଇବ, ରୋଶଣି ଜଳିବ, ବାଜା ବାଜିବ ତାଧିନା ତାଧିନା, ବାଣ ଫୁଟିବ ଢୋ, ଢା··· ତା'ପରେ ବର ଆସିବ—ସେଇଠୁଁ ତ କାନ୍ଦଣା···

ହେଁ ମଝିଦରିଆରେ ଭସେଇଦେଲୁ ଲୋ ବୋଉ,
ବନ୍ଧୁଆଡ ସଙ୍ଗେ ଗୁଡ଼େଇ ଦେଲ ହେ ବାପା···

ମାଲା—ଏ ଜଗା ! ବୋଉ, ଦେଖିଲୁ ଏ ମାଇଚିଆକୁ !

—ଅନ୍ଧାର—

## ପଞ୍ଚମ ଦୃଶ୍ୟ

[ ସେଇ ବଉଳ ଗଛ ମୂଳ—ସମୟ ଅପରାହ୍ଣ । ଦୂରରୁ ଶୁଭୁଛୁ ସନ୍ନ୍ୟାସୀର ଗୀତ—ମଞ୍ଚରେ କେତୋଟି କଣ୍ଢେଇ ପଡ଼ିଛୁ । ମାଲା ଗୋଟିଏ କଣ୍ଢେଇ ଧରି ସଜେଇବାରେ ଲାଗିଛୁ । ଭାନୁ ଆସିଲା ]

ଭାନୁ—କାଲେ ମାଲା, ସଞ୍ଜ ହେଲାଣି, ତୁ ଏକୁଟିଆ ବସିଛୁ ?

ମାଳା—ତୁ ଜାଣିନୁ କି ଭାନୁ, ଅଙ୍କ ପରା ମୋ ଝିଅ ମିଠୁର ବାହାଘର !

ଭାନୁ—ବାହାଘର ? ଢୋଲ ନାହିଁ, ଶଙ୍ଖ ନାହିଁ, ମହୁରୀ ନାହିଁ···କାହାର କ'ଣ ଦେଖା ଦର୍ଶନ ନାହିଁ, କି ବାହାଘର ହେବ ମ ?

ମାଳା—ଏ ସବୁ କରିବାକୁ କ'ଣ ମନ ନାହିଁ, ହେଲେ ତା'ର କିଏ ଅଛି କହିଲୁ ? ଗୋଟିଏ ବୋଲି ତ ମଣିଷ ମୁଁ । କ'ଣ କରିବି କହ ? ଆଜିକାଲି କି କାଳ ହେଲା ଯେ, ଭାଇପଡ଼ଶା, ବନ୍ଧୁବାନ୍ଧବ ତ ଟିକିଏ ମୁହଁକୁ ଅନାଉ ନାହାନ୍ତି । ଝିଅଟାକୁ ପରା ତାଙ୍କର ଦାଉରୁ ବ'ଧ ବରଷ ଘରେ ରଖି ଏଇଥର ଉଠେଇ ଦଉଛି ।

ଭାନୁ—ସତେ ?

ମାଳା—ଯେତେ ଜାଗାରେ ଠିକ୍ କଲି ସବୁ ପରା ଭାଙ୍ଗି ଦେଲେ । ଯୋଉ କଷ୍ଟରେ ଏ ବଇଶାଖ ମାସରେ ଜୁଟିଲା···

ଭାନୁ—କୋଉଠି ? କାହା ସାଙ୍ଗରେ ?

ମାଳା—ସେଇ ମ, ମୋ ବଉଳର ପୁଅ । ଠିକ୍ ଭାଇଭଉଣୀ ପରି ଦେଖାଯିବେ ।

ଭାନୁ—ବଉଳ ? କିଏ ସେ ?

ମାଳା—ସେଇ ମ, ସେ ଦାସ ସାହି···ନାଁ ଟା କହିବନି ପରା···

ଭାନୁ—ଓଃ, ଡଲି !!!

ମାଳା—ନାଇଁ ମ, ସେ କୁନିଅପା ଝିଅ ଆମ ଇସ୍କୁଲରେ ପଢୁଥିଲା, ଡେଙ୍ଗା ହେଇ···

ଭାନୁ—ବୁଝିଲି, ମିନୁ ତ !!

ମାଳା—ମିନୁ ନୁହେଁ ମ, ଅନୁ !!!

ଭାନୁ—କାଲେ, ନାଁ ଧରା ଧରୁ ନ ଥିଲୁ ?

ମାଳା—ତୋ ସାଙ୍ଗରେ ମୁଁ ଏତେ ବକର ବକର ହେଇପାରିବିନି । ରାଇଜଯାକର କାମ ଏଣେ ପଡ଼ିଛି ।

ଭାନୁ—କାମ ତ କରିବୁ ! ହେଲେ ଝିଅକୁ ସବୁ କ'ଅଣ ଦଉଛୁ, କହିଲୁ ?

ମାଳା— କ'ଣ ଅଉ ଦେବ, କହ ? ଗରିବ ଝିଅ । ବାପ ଅଛି ନା ଭାଇ ଅଛି ? ଦ'ଟା ତୁଳସୀପତ୍ର ଦେଇ ବିଦା କରୁଛି ।

ଭାନୁ—କାଲେ, କ'ଣ ପକ୍କା ଘରଣୀଙ୍କ ପରି କଥା କହୁଛୁ ?

ମାଳା—କାହିଁକି ? ମୁଁ କ'ଣ ତୋ ଆଖିକୁ ପିଲା ଦେଖାଗଲି ?

ଭାନୁ—ନାଇଁ, ତୁ ଏବେ ବୁଢ଼ୀ ହୋଇଗଲୁଣି ! ଆଚ୍ଛା, କହିଲୁ, ତୋ ଜୋଇଁଟି କେମିତିଆ ?

ମାଳା—ତା କଥା କହନା । ଏ ଖଣ୍ଡମଣ୍ଡଳରେ ତା ଭଳି ପିଲଟିଏ ପରା ନାହିଁ । ହଳଦି ପାଣିକୁ ଗୋଡ଼ ବଢ଼ାଏନା କି ମାଛକୁ ମ' କହେନା । ଏତେ ପାଠ ପଢ଼ିଛି, ବଡ଼ ପାଟିରେ କ'ଣ କଥା କୁହେ ! ସେ ପରା ମୋ ଭାଗ୍ୟ ।

ଭାନୁ—ସବୁ ତ ହେଲା । ବାହାଘର ହବ ଯେ, ବାହା କରେଇବ କିଏ ?

ମାଳା—କାହିଁକି, ମୁଁ ପରା ଅଛି ! ମୋ ଝିଅ ବାଡ଼ୁଅ ରହିବ ?

ଭାନୁ—ଆଲେ ହୁଣ୍ଡୀ, ଝିଅମାନେ କ'ଣ ବାହା କରନ୍ତି ?

ମାଳା— ଆରେ, ସତେ ତ ! ହେ ଭାନୁ···ଭାନୁ ମ ! ମିଛ, କ'ଣ ତୋ'ର କେହି ନୁହେଁ ? ତୁ ଟିକିଏ ବସିଯିବୁନ ?

ଭାନୁ ତୋ ଝିଅ, ମୁଁ କେମିତି ବାହା କରେଇବ ?

ମାଳା—ସେ କ'ଣ ତୋ ଝିଅ ନୁହେଁ···!

ଭାନୁ—ତୁ ବୁଝୁନୁ ମାଳା, ଆରେ ତୁ ସିନା ପିଲା ହୋଇଛୁ···

ମାଳା—ଢାଣ୍ଡଲୋକଙ୍କ କଥା ତୁ ଶୁଣୁନା, ଭାନୁ ! ସେମାନେସବୁ ଘର ଭାଙ୍ଗି-ଦେବେ, ହେଲେ ଯୋଡ଼ି ଦେବେନି ! ତୁ ଟିକିଏ ରାଜା ହେଇଯା···

ଭାନୁ ହଁ, ମୁଁ ରାଜା !!!

( ବାହାରୁ ଶୁଭିଲା ଶଙ୍ଖ ଓ ମହୁରି )

—ଧୀରେ ଧୀରେ ମଞ୍ଚ ଅନ୍ଧାର ହେଲା—

# ଷଷ୍ଠ ଦୃଶ୍ୟ

[ ଆଠ ଦଶଦିନ ପରର ଅପରାହ୍ନ । ଗାଁ ଦାଣ୍ଡ ।
ଜଗା ମୁଣ୍ଡ କୁଣ୍ଡେଇ କୁଣ୍ଡେଇ ଚାଲିଯାଉଛି ।
ପଛରୁ ଡାକିଲି ପଶୁପତି ]

ପଶୁପତି—ଜଗା, ଏ ଜଗା !

ଜଗା – (ଚୁପ୍ ହୋଇ ଠିଆହୋଇ ରହିଲା )

ପଶୁପତି—କିରେ ଜଗା, କ'ଣ ଶୁଭୁନି କିରେ ?

ଜଗା—କେତେଥର କହିଲଣି ସାନ୍ତେ···

ପଶୁପତି—( ଚମକି ପଡ଼ି ) କ'ଣ କେତେଥର କହିଲ୍‌ଣି ରେ ?

ଜଗା—କଥାଟା କିଛି ଭଲ ହଉନି ।

ପଶୁପତି—କିରେ କ'ଣ ଭଲ ହେଉନି ? ମୁଣ୍ଡ ଖରାପ ହୋଇଗଲାଣି କିରେ ?

ଜଗା—ମୋ ମୁଣ୍ଡ ଖରାପ ହବ, ତମର ମୁଣ୍ଡ ଖରାପ ହଉ ।

ପଶୁପତି— କିରେ ତୋର କ'ଣ ହୋଇଛି ?

ଜଗା—କେତେଥର କହିଲଣି ଗୁମାସ୍ତାଏ···

ପଶୁପତି—କିରେ କ'ଣ କହିଲୁଣି ?

ଜଗା—ଆପଣଙ୍କର ତ କିଛି ମନେ ରହୁନାହିଁ ?

ପଶୁପତି—କ'ଣ ମନେ ରହିଲା ନାହିଁ ? ରାଇଜଯାକର କାମ ମୋ ମୁଣ୍ଡ ଉପରେ । ମୋର ଏବେ ମନେ ରହିଲା ନାହିଁ । ହଉ ତେବେ କ'ଣ କହ !

ଜଗା – କହୁଚ ପରା, ଜଗା ବୋଲି ମୋତେ ଡାକିବେ ନାହିଁ ।

ପଶୁପତି—ହଇରେ, ସମସ୍ତେ ତତେ ଜଗା ବୋଲି ଡାକୁଛନ୍ତି, ଆଉ ମୁଁ···

ଜଗା—ଘରେ ଡାକିଲେ ମୁଁ କ'ଣ ମନା କରୁଚ ? ଏ ଦାଣ୍ଡଘାଟରେ, ପୋଖରୀ ତୁଠରେ, ପାଞ୍ଚ ଲୋକଙ୍କ ଆଗରେ କହିଲେ ମୋତେ ବାଧେ । କହିଲ, ତମକୁ ବାଧନ୍ତା ନାହିଁ ?

ପଣ୍ଡାପଣ୍ଡ—ହଇରେ, ବାଧିବ କାହିଁକି ? ମୋ ନାଁ ହେଲା ପଣ୍ଡାପଣ୍ଡ । ହେଲେ ମତେ ସା'ନ୍ତେ ଅତି ସ୍ନେହରେ 'ପଣ୍ଡୁ' 'ପଣ୍ଡୁ' ବୋଲି ଡାକନ୍ତି; ବେଳେ ବେଳେ ବଳଦ ଆଉ ଘୁଷୁରି ବୋଲି କୁହନ୍ତି । ହେଲେ ମୋ'ର ତ ସେଗୁଡ଼ା ବେଶ ହଜମ ହୁଏ । ତତେ ଏମିତି ବାଧୁଛି କାହିଁକି ?

ଜଗା—ହେଲେ ମତେ ସେଗୁଡ଼ା ସବୁ ରୁଚେନା । ତମେ ବୁଢ଼ା ହେଲଣି, ତମର ବଳ ବୟସ ଗଲଣି, ସଂସାର କଲଣି, ପିଲାଛୁଆ ପଞ୍ଚାଏ ହେଲେଣି, ନାତି ନାତୁଣୀ ଦେଖିବାକୁ ବସିଲଣି; ହେଲେ ମୋର ତ ବାଳ ପାଚନି, ମୋର ତ ଫେରେ ସଂସାର କରିବାର ଆଶା ଅଛି ।

ପଣ୍ଡୁପଣ୍ଡ—ହଇରେ, ତୁ କରିବୁ ସଂସାର ?

ଜଗା କରନ୍ତିନି ନା କ'ଣ ? ମୋ ସାଙ୍ଗରେ ମକର୍, ଚେମା, ଗୋପିଆ ସମସ୍ତେ ବାହାସାହା ହୋଇ ଘରସଂସାର କଲେଣି; ମୁଁ ପୁଣି ବାବୁଙ୍କର ଖାସ୍ ବୋଲକର୍ ଗୃକର; ମୋର କ'ଣ ସେତିକି ଆଶା ନାହିଁ !

ପଣ୍ଡୁପଣ୍ଡ—କ'ଣ କୋଉଠି ଠିକ୍ ଠିକଣା କଲୁଣି ?

ଜଗା— ନାଇଁ, ଚେଷ୍ଟାରେ ଅଛି ।

ପଣ୍ଡୁପଣ୍ଡ—ସତେ !!!

ଜଗା—ସବୁ ହ'ଲା ଯେ···ଖାଲି ତମେ ତ ସବୁ ଭଣ୍ଡୁର କରୁଛ । ଏ ଦାଣ୍ଡ ମଝିଁ ଟାରେ ଜଗା ଜଗା ବୋଲି ରଡ଼ି ପକେଇଲେ ଯେ ରାଜି ହେଇଥିଲେ ବି ସେ ମନା କରିଦେବ ।

ପଣ୍ଡୁପଣ୍ଡ—ହେଲେ ଏ ଖଣ୍ଡମଣ୍ଡଳରେ ତୋ ନାକି ପାଇଁ କାହିଁ ଦିଶୁନାହାନ୍ତି !

ଜଗା—ତମକୁ ଚାଳିଶା ଘାରିଲଣି । ଏଠି ନାହାନ୍ତି ??? ସେ ଚେମା ପଧାନ ଝିଅ ରମ୍ଭା, ବଢ଼େଇ ନାହାକ ଝିଆରି ମେନକା, ସନେଇ ରାଉତ ନାତୁଣୀ ଉରୁବଶୀ···ସମସ୍ତେ ପରା ମତେ ଗୃହିଁ ବସିଛନ୍ତି ।

ପଣ୍ଡୁପଣ୍ଡ—ହଇରେ ଜଗା, ଏ ଗାଆଁ ଟା ଯାକର ରମ୍ଭା, ମେନକା, ଉର୍ବଶୀ ସମସ୍ତେ ତତେ ଅନେଇ ବସିଛନ୍ତି ?

ଜଗା—ବସନ୍ତେ ନାଇଁ ନା କ'ଣ ? ତମେ ଜାଣିଛ, ମୋ ଯିବାବେଳ ଜାଣି, କିଏ ପୋଖରୀ ଘାଟରେ, ଆମ୍ବ ଯୋରଡ଼ା ପାଟରେ, ତୋଟାମୂଳେ, ବାଉଁଶ

ଦ୍ୱାରେ ଲୁଚିରହି ମୁରୁକି ହସ ହସୁଥିଲେ ଯେଉଁ ଆଖି ମିଟିକା ମାରନ୍ତି... (ହସ) ଆଉ ମୁଁ ବ ବେଳ ଜାଣି ପାନଆଣ୍ଠାକୁ ମୁଣ୍ଡରେ ଦି'ଥର ଚଳେଇଦିଏ ।

ପଶୁପତି—ଆରେ ଖାଲି ମୁଣ୍ଡଟାକୁ ଚକ୍‌କଣ କଲେ କ'ଣ ହେବ ? ମୁହଁଟାକୁ ଟିକେ ବାଗା ।

ଜଗା—ସବୁ ବାଗେଇ ଦିଅନ୍ତି ଯେ ଗୁମାସ୍ତାଏ, ବହୁତ ଆଗେଇ ଯାଆନ୍ତି; ହେଲେ ତମେ ଏ ବାଟ ମଝିରେ ଜଗା ଡାକି ଖାଲି ପଗ ପଛେଇ ଦେଉଛ । ଘରେ ଦି'ଟା ମତେ ମାର, ଯାହା କର, ହେଲେ ଆଉ ଏ ଦାଣ୍ଡଘାଟ, ପୋଖରୀତୁଠ, ଚୋଟାମାଳରେ ଜଗା ଡାକଟାକୁ ଟିକିଏ କଣ୍ଟ୍ରୋଲ କରିଦିଅ ।

ପଶୁପତି—ହଉ ହେଲା, ଏଥର ଜଗବନ୍ଧୁ ବୋଲି ଡାକିବ ! ବାବା ଜଗବନ୍ଧୁ !

ଜଗା—ଆଜ୍ଞା !!

ପଶୁପତି—ତମର ଖୋଜଖବରକୁ ଅନେଇ ରହିଲି ।

ଜଗା—( ହସିଉଠିଛି )

ପଶୁପତି—ଯା'ବେ, କାମରେ ଯା । ତେଣେ ସଞ୍ଜ ନ ହେଉଣୁ ଭିଡ଼ ପଡ଼ିବ, ଭଦରଲୋକ ଆସିବେ, ଯାଇଭାଇ ଆସିବେ...ବାବୁ ତାଙ୍କ କାରଖାନାରୁ କେତେ ବଡ଼ ବଡ଼ ହାକିମ ଡାକିଛନ୍ତି । ବାବା ଜଗବନ୍ଧୁ ! ଯାଅ, ଘରଟାଯାକର କାମ ପୁଣି ତୁଲେଇବାକୁ ପଡ଼ିବ, ଗାଈଜ ଯାକର କାରବାର, କ'ଣ କମ୍ କଥା !

ଜଗା ମୁଁ ଯାଉଛି, ସଞ୍ଜ ଆଗରୁ ମୁଁ ନେଉଟି ଆସିବି । ଘିଅ ଦୁଧ ନେଇ ଗଉଡ଼ ଆସିବେ, ତାଙ୍କୁ ପାଉଣା ଦେଇ ବିଦା କରିଦେବ, ଯାଉଛି ।

ପଶୁପତି—ଯା'ବେ ! ( ପଶୁପତି ଯେଉଁଆଡ଼ୁ ଆସିଥିଲେ ସିଆଡ଼େ ପୁଣି ଗଲେ, ବାଟ ମଝିରେ ମନେ ପଡ଼ିବାରୁ )

ପଶୁପତି—ଜଗା !!!

ଜଗା—( ଫେରିପଡ଼ିଲା ) ଫେରେ ଡାକିଲ ଜଗା ???

[ କ୍ରମଶଃ ସନ୍ଧ୍ୟା ହୋଇ ଆସେ ଏବଂ ମଞ୍ଚ ଅନ୍ଧାର ହୁଏ ]

## ସପ୍ତମ ଦୃଶ୍ୟ

[ ଶଶୀଙ୍କ ପଟ୍ଟନାୟକଙ୍କ ଘର । ସୋଫାସେଟ୍ ଏବଂ ଅନ୍ୟାନ୍ୟ ଦାମିକା ଆସବାବପତ୍ର ରହିଛି । ମାଳାର ଜନ୍ମଦିନ—ମେଘୁଆ ରାତ—ମାଳାର ସାଙ୍ଗମାନେ ବସିଛନ୍ତି । ଆଲୋକ ଜଳବାକ୍ଷଣି ଆରମ୍ଭ ହେଲା ନୃତ୍ୟ । ନୃତ୍ୟ ଶେଷରେ ଚଣ୍ଡୀଙ୍କ ଭୋଗ ପିଲାମାନଙ୍କୁ ଦେଲେ କଲ୍ୟାଣୀ ]

କଲ୍ୟାଣୀ—ଜଗା, ରାମକୁ କହ ଏମାନଙ୍କୁ ନେଇ ଗାଁରେ ଛାଡ଼ି ଦେଇ ଆସୁ, ମେଘ ଘୋଟିଛି । ଯା ଚଞ୍ଚଳ ।

( ପିଲାମାନେ ଜଣ ଜଣ ହୋଇ ଚାଲିଗଲେ )

ମାଳା—( ମନ ମାରି ବସିଥାଏ )

କଲ୍ୟାଣୀ—ତୁ ଏଥର ଟିକିଏ ମା'ଙ୍କ ଭୋଗ ଖାଇଦେ ।

ମାଳା ନା ବୋଉ, ମୁଁ ଖାଇବି ନି ।

କଲ୍ୟାଣୀ—କାହିଁକି ଖାଇବୁନି ? ଆଉ ମୁହଁ ଶୁଖାଇ, ମନ ମାରିଦେଇ ବସିଚୁ କାହିଁକି ?

ମାଳା—ସେ ଆସିଲା ନାହିଁ, ବୋଉ !

କଲ୍ୟାଣୀ—କିଏ ?

ମାଳା—ସେଇ ସ, ସାନୁ···

କଲ୍ୟାଣୀ—ଏଥିର ତା 'ହେଲେ ନାଁଟା ମନେ ରଖିଚୁ ?

ମାଳା—କାହିଁକି ସିଏ ଆସିବ ନାହିଁ ନା ?

କଲ୍ୟାଣୀ—ସତ କଥା ତ ! ସବୁ ପିଲା ଆସିଲେ, ମାଷ୍ଟର ଆସିଲେ, ସେ କାହିଁକି ଆସିଲାନି ? ତୁ କହିଥିଲୁ ଟି ?

ମାଳା—କେତେଥର କହିଥିଲି ସ ବୋଉ !

କଲ୍ୟାଣୀ—ତା'ହେଲେ ଆସିଲାନି ସେ କାହିଁକି ? ତା ସାଙ୍ଗରେ କ'ଣ କଳିଗୋଳ କରିଛୁ ?

( ଭାନୁ ପଶିଆସିଲା, କଲ୍ୟାଣୀଙ୍କୁ ପ୍ରଣାମ କଲା )

ମାଳା—ଏଇ ବୋଉ, ଏଇ ସିଏ···

ଭାନୁ—କ'ଣ ନାଁଟା ମନେ ପଡ଼ୁନି କି ? ଅଚ୍ଛା ମାଉସୀ, ମୋ ନାଁଟା ଯେତେବେଳେ ସେ ଭୁଲିଯାଉଛି, ମୁଁ ବା ଆସିଥାନ୍ତି କାହିଁକି ? ମତେ ସଦା ଚିହ୍ନିବାକୁ ଭୁଲି ଯାଇଥାନ୍ତା··· !

କଲ୍ୟାଣୀ—ତା' କଥା ଆଉ କହନା ବାପ, କୋଉ କଥା ସେ ଆଉ ମନେ ରଖିଛି ଯେ ? ବାପା ତ ଗେହ୍ଲା କରି ତାକୁ ଏମିତି କରିଛନ୍ତି । ମତେ ସବୁ ହଇରାଣ କରି ମାରୁଛି ! ତମ ଇସ୍କୁଲ କଥାରୁ ଦେଖୁ ନ ଥିବୁ । କୋଉଦିନ ବହି ଗୁଡ଼ାଇଲି ତ କୋଉଦିନ ପେନସିଲ ଗୁଡ଼ାଇଲା, କିଛି ନା କିଛି ଗୋଟାଏ ନଷ୍ଟେ ହଜୁଥିବ ।

ଭାନୁ—ଆଉ ସେଇ ହଜିଲା ଜିନିଷକୁ ଖୋଜିଆଣି ଦେବା କାମ ମୋର, ମାଉସୀ ! ସେଥିରେ ପୁଣି କି ଜୁଲମ !

କଲ୍ୟାଣୀ—ସବୁ ଶୁଣିଛି ବାପ, ତମେ ଏଥର ପ୍ରସାଦ ଟିକିଏ ପାଅ ତ, ଏ ଯାଏ ସେ ପାଣି ଟୋପାଏ ବି ପାଟିକି ନେଇନି । ମୁଁ ଜଳଖିଆ ଆଣେ ।

( ଭିତରକୁ ଚାଲିଗଲେ )

ମାଳା—ଭାନୁ, ଏ ମେଘ ଅନ୍ଧାର ରାତିରେ ତୁ ଆସିବୁ ବୋଲି ମୁଁ ଭାବି ନ ଥିଲି ।

ଭାନୁ—ବାଃ, ନ ଆସନ୍ତି ବା କେମିତି ? ତୁ ସବୁ ରାଣ ପକେଇଥିଲୁ !

ମାଳା—ଓଃ, ଭାରି ତ ମନେ ରଖିଥିବୁ ମୋ କଥା !

ଭାନୁ—ମୁଁ ତ ଆଉ ତୋ ପରି ବଡ଼ଲୋକର ଗେହ୍ଲାଝିଅ ହେଇନି···

ମାଳା—ଭାନୁ ! ଦେଖିବୁ, କାନ୍ଦିବି ।

ଭାନୁ—ଛି, ଆଜି ପରା ତୋ ଜନ୍ମଦିନ; ଆଜି ପରି ଦିନରେ କ'ଣ କାନ୍ଦନ୍ତି !

ମାଳା—ମୁଁ କ'ଣ ସତରେ କାନ୍ଦନ୍ତି ! ମିଛରେ ତତେ କହୁଥିଲି ନା···

ଭାନୁ—ମୋର ଗୋଟାଏ କଥା ରଖିବୁ, ମାଳା !

ମାଳା—ହୁଁ, କହ ।

ଭାନୁ—ଟିକିଏ ଆଖି ବୁଜିଲ୍ ।
ମାଳା—( ଆଖି ବୁଜିଲା )
ଭାନୁ—( ମାଳା ଗଳାରେ ଗୋଟାଏ ବଉଳ ହାର ଦେଲା ) ଏଥର ଆଖି ଖୋଲ ।
ମାଳା ( ଥରେ ମାଳାକୁ ଥରେ ଭାନୁକୁ ଚାହିଁଲା ) ବାଃ, ଭାରି ଭଲ ହୋଇଚି ତ !
( ଜଳଖିଆ ନେଇ କଲ୍ୟାଣୀ ଆସିଛନ୍ତି )
କଲ୍ୟାଣୀ—ନିଅ, ଖାଇନିଅ ।
( ପଶୁପତି ପଶିଆସିଲା )
ପଶୁପତି—ମା, ବାବୁ ତ ଏ ଯାଏ ଆସିଲେନି । ସଞ୍ଜ ଭିତରେ ତାଙ୍କର ଏଠି ପହଞ୍ଚିବାର ଥିଲା । ରାତି ତ ଆସି ଦୁଇଘଡ଼ି ହେଲାଣି । ଏଣେ କଳାହାଣ୍ଡିଆ ମେଘସବୁ ଆକାଶରେ ଗୁଡ଼ି ହୋଇଗଲାଣି ।
କଲ୍ୟାଣୀ—ମୁଁ ବି ସେଇୟା ଭାବୁଛି । ବାଟରେ ମଟର ଖରାପ ହେଲା କି କ'ଣ ! ତମେ କାଗାକୁ ପଠାଇଲ, କେନାଲବନ୍ଧ ଉପରେ ଦେଖିଆସୁ ।
ପଶୁପତି ହଁ, ଠିକ୍ କଥା ମା ! ଅନ୍ଧାର ରାତି, କୋଉଠି କ'ଣ ଯେବେ ମଟର ବିଗିଡ଼ି ଥିବ, ନିରାଶ୍ରା ହୋଇ ପଡ଼ିବା କଥା । ଏ ସବୁ ବିଳାତି ଯନ୍ତ୍ର, ଯେତିକି ଭଲ, ସେତିକି ଖରାପ । ଚାଲିବ ଯଦି ପୁଷ୍ପକ ବିମାନ···ଯଦି ଖରାପ ହବ ନା, ଶଗଡ଼ଠୁଁ ବି ବଳିଯିବ ।
କଲ୍ୟାଣୀ—ହଉ ତମେ ଯାଅ, ସେଇୟା କର । କାଗାକୁ ଟିକିଏ ପଠାଇଦିଅ । ହଁ, ଯାଇପଡ଼ଣା ସବୁ ଖାଇପିଇ ଗଲେଣି ?
ପଶୁପତି—ସେ କାମ ମୁଁ ଏତେବେଳଯାଏ ବାକି ରଖିଛି ?
କଲ୍ୟାଣୀ—ବାବୁଙ୍କର ଲୋକ ଆସିବେ, ସେମାନଙ୍କ ପାଇଁ ବାହାର ଘରଟା ସଫା କରିଦେଇଛ ?
ପଶୁପତି—ହଁ । ଟେବୁଲ୍ ଚେୟାର ବିଛଣା ସବୁ ନେଇ ସଜାଡ଼ି ଦେଇଛି ।
କଲ୍ୟାଣୀ—ତେବେ ଏଥର ଯାଅ ।
( ପଶୁପତି ଚାଲିଯାଏ )
ଭାନୁ—ମୁଁ ତା'ହେଲେ ଯାଉଛି, ମାଉସୀ !

କଲ୍ୟାଣୀ—ଏତେ ରାତ୍ରରେ ଏକା ଯିବା ! ଚାଲ, ତମ ମାଆରେ ମୁଁ ଗୋଟାଏ ଲୋକ ପଠାଇଦଉଛନ୍ତି । ହଁ ପୁଅ, ତମ ଘରଟା କୋଉଠି କହିଲ ନାହିଁ ତ ?

ଖାନୁ—ଏଇ ପାଖ ଗାଁ ବଳାସପୁର ।

ମାଳା—ସେ ଆମ ସ୍କୁଲରୁ ଫାଷ୍ଟ ହୋଇ ହାଇସ୍କୁଲରେ ପଢୁଛି ।

କଲ୍ୟାଣୀ—ଠାକୁରେ ତମକୁ କୋଟି ପରମାୟୁ ଦେଇଥାଆନ୍ତୁ, ବହୁତ ପଢ଼ ।

ମାଳା—ରାତ ବହୁତ ହେଉଚ ପରା, ବୋଉ !

କଲ୍ୟାଣୀ—ହଉ ଚାଲ ବାପା, ଏଇ ପାଖରେ ତ ଘର, ବେଳେବେଳେ ଆମ ଘରଆଡ଼େ ଆସୁଥିବ ।

ଖାନୁ—ହଉ ।

[ ଖାନୁ, କଲ୍ୟାଣୀ ଚାଲିଗଲେ । ମାଳା ସେମାନଙ୍କ ବାଟକୁ ଚାହିଁଲା । ଖୋଲ ଛତା ଧରି ଦଉଡ଼ି ଦଉଡ଼ି ପଶିଆସିଛି ପଶୁପତି । ହାତରେ ଲଣ୍ଠନ । ]

ପଶୁପତି—ମାଆ, କେନାଲ ବନ୍ଧ ଉପରେ ମଟର ଆଲୁଅ ଦେଖାଗଲାଣି । (ଚାହିଁ) କେହି ନାହାନ୍ତି ! ମା, କୁଆଡ଼େ ଗଲେ ସବୁ ? ଜଗା, ଜଗା ପାଜି ' ବଦମାସ, ମାଇଚଆ !

( ଭିତରକୁ ଚାଲିଗଲା । ଜଗା ଓ ଶଶାଙ୍କ ପଶି ଆସିଛନ୍ତି । ସୁଟକେସ୍ ଧରିଛି ଜଗା )

ଶଶାଙ୍କ—ପଶୁ ! ପଶୁ ! ଗୁମାସ୍ତା ଗଲେ କୁଆଡ଼େ, ଜଗା ?

ଜଗା—ଏଇ ଭିତରେ କୁଆଡ଼େ ଥିବେ, ଆଜ୍ଞା !

( ବିପରୀତ ଦିଗରୁ କଲ୍ୟାଣୀ ଓ ପଶୁପତି ପ୍ରବେଶ କଲେ )

ପଶୁପତି—ଜଗା ! ( ଚମକି ଠିଆହୋଇ ପ୍ରଣାମ କଲା ଶଶାଙ୍କଙ୍କୁ )

ଶଶାଙ୍କ—ପଶୁପତି ! ଏଠି ଠିଆହେଲ କ'ଣ, ବାହାରେ ଭଦ୍ରଲୋକ ପରା ଠିଆ ହୋଇଛନ୍ତି ! ସେମାନଙ୍କୁ ବସାଅ ।

ପଶୁପତି—ହଁ, ବସନ୍ତୁ ଆଜ୍ଞା, ବସନ୍ତୁ !

ଶଶାଙ୍କ—ଅରେ, କାହାକୁ ବସଉଛ ? ଇଡିଅଟ, ବାହାରେ ସେମାନେ ଠିଆ ହୋଇଛନ୍ତି ।

ପଶୁପତି—ଠିକ୍ କହୁଛନ୍ତି ଆଜ୍ଞା, ବାହାରକୁ ଯାଉଛୁ । ଅଜ୍ଞା, କୋଉଠି ବସେଇବ ?

ଶଶାଙ୍କ – ତମ ମୁଣ୍ଡ ଉପରେ । ଇଡିଅଟ୍, ଗେଷ୍ଟ ହାଉସଟା ଖୋଲିଦିଅ ।

ପଶୁପତି—ଯାଉଚି, ଆଜ୍ଞା ! ( ଯାଉ ଯାଉ ରହିଗଲା ) ହେଲେ ଆଜ୍ଞା, ଚାବିଟା ? ଜଗା, ଚାବିଟା କାହିଁ ?

ଜଗା—ଚାବିଟା ପରା ଆପଣ ହାତରେ ଧରିଛନ୍ତି !

ପଶୁପତି—( ହାତରେ ଚାବି ଦେଖି ) ଠିକ୍ କଥା, ଆଜ୍ଞା, ଯାଉଛୁ ।

( ଭିତର ଆଡ଼କୁ ଚାଲିଗଲାବେଳେ )

ଶଶାଙ୍କ—ସେବାଟେ କୁଆଡ଼େ ଯାଉଚ ? ବାହାରେ ପରା ସେମାନେ ଅପେକ୍ଷା କରିଚନ୍ତି ! ( ପଶୁପତିକୁ ଠେଲିଦେଲେ ସଦର ରାସ୍ତା ଆଡ଼କୁ । ପଶୁପତି ଚାଲିଗଲା )

କଲ୍ୟାଣୀ ଏ ଜଗା, ପଙ୍ଖାଟା ଆଣିଲୁ । ( ଜଗା ଭିତରକୁ ଗଲା ) ତମର ଆସିବାକୁ ଏତେ ଡେରି ହେଲା ଯେ ?

ଶଶାଙ୍କ—କ'ଣ କରିବି କଲ୍ୟାଣୀ, ଆଜିକାଲି ମିଲ୍ ଚଳେଇବା ଯେ କେତେ ଜଞ୍ଜାଳ, ତମେ ଏଠି ଥାଇ ସେ କଥା ବୁଝିପାରିବ ନି । ଶ୍ରମିକମାନେ ସେମାନଙ୍କ ଦାବି ବିଷୟରେ ଅତିମାତ୍ରାରେ ସଚେତନ । ସେମାନଙ୍କ ବିରୁଦ୍ଧରେ କୌଣସି କାମ କରିବାକୁ ଯିବା ପୂର୍ବରୁ ଅନେକ ଚିନ୍ତା କରିବାକୁ ପଡ଼ୁଛି ।

କଲ୍ୟାଣୀ—ସେମାନେ ଗରିବ ଲୋକ; ସେମାନଙ୍କ ହକ ଦାନାଗଣ୍ଡାକ ଦେଇ-ଦେଲେ ତ ଏତେ ଗୋଳମାଳ ହୁଅନ୍ତା ନାହିଁ !

ଶଶାଙ୍କ—ଆଜିକାଲି ସେମାନଙ୍କ ଦାବି ଅଜସ୍ର ସେମାନଙ୍କର ଗୋଟାଏ ଦାବି ପୂରଣ କଲାବେଳକୁ ଆଉ ୫ଟି ଦାବି ନେଇ ସେମାନେ ଆଗେଇଆସିବେ । ଆଉ ତମ ପରି ଉଦାରତା ଦେଖେଇ ଚାଲିଲେ ବ୍ୟବସାୟରେ ଆଉ ଲାଭର ପ୍ରଶ୍ନ ଉଠିବନି ।

କଲ୍ୟାଣୀ--ସେମାନଙ୍କୁ ସେକଥା ବୁଝେଇଦେଲେ କ'ଣ ହ'ନ୍ତା ନାହିଁ ?

ଶଶାଙ୍କ—ସେମାନଙ୍କର ନେତାମାନଙ୍କୁ ବୁଝେଇବାକୁ ବହୁତ ଚେଷ୍ଟା କରିଛୁ । ଆଜି ସେଇ ବିଷୟ ନେଇ ଗୋଟାଏ ମିଟିଂ ଥିଲା; ତେଣୁ ସନ୍ଧ୍ୟା ପୂର୍ବରୁ ଆସିପାରିଲିନି । ଆଚ୍ଛା, ମାଳା କାହିଁ, ମୋ ଉପରେ ରାଗିଛି ନା କ'ଣ ? ତାକୁ ଡାକ ତ ମୋ ପାଖକୁ ।

କଲ୍ୟାଣୀ—ଏଇଠି କୋଉଠି ଥିବ । ମାଳା, ମାଳା···

(ଭିତରକୁ ଗଲେ)

ମାଳା (ବାହାରୁ ଡେଇଁ ଡେଇଁ ଆସିଛି)

ଶଶାଙ୍କ ଏଇତ ମା' ମୋର, ଆ ଇସ୍କୁଲ୍‌ରୁ ଆସିଲୁ, ମା ! ତୋ ପାଇଁ ସବୁ କେତେ ଜିନିଷ ଆଣିଛି, ଦେଖ୍ ।

ମାଳା—(ଠିଆ ହୋଇ ରହିଲା) ମୁଁ ତ ତମ ସାଙ୍ଗରେ କଥା କହିବିନି, ବାପା !

ଶଶାଙ୍କ—ଜମା କଥା କହିବୁନି ?

ମାଳା—ନା, ନା, ନା ।

ଶଶାଙ୍କ—ଏଇ ତ କଥା କହିସାରିଲୁଣି !

ମାଳା—ଆଉ କହିବିନି ।

ଶଶାଙ୍କ ତୋ ବୋଉ ପାଖରେ ଥରେ କୈଫିୟତ ଦବାକୁ ପଡ଼ିଲା, ପୁଣି ତୋ ପାଖରେ ବି ଦବାକୁ ପଡ଼ିବ । ଆ, ସୁନା ମାଆ ମୋର ! (ମାଳାକୁ କୋଳେଇ ନେଇ) ଏଇଟା କ'ଣ ? ଆଜି ଏତେବଡ଼ ଦିନଟାରେ ମୋ ମା' ବେକରେ ଗୋଟାଏ ବଉଳ ହାର ?

ଶଶାଙ୍କ—(ସୁଟକେସ୍‌ରୁ ଗୋଟାଏ ହାର କାଢ଼ି ମାଳାକୁ ପିନ୍ଧାଇଦେଲେ) ମିଲମାଲିକ ଶଶାଙ୍କ ପଟ୍ଟନାୟକ ଝିଅ ଗଳାରେ ସୁନାର ହାର ହିଁ ସାଜେ । (ଚାଲିଗଲେ । ବଉଳ ହାରଟାକୁ ଛିଣ୍ଡେଇ ପକାଇଦେଲେ । ଗୋଟାଏ ପ୍ରଚଣ୍ଡ ଘଡ଼ଘଡ଼ି ମାରିଲା । ମାଳା ଚମକି ଉଠି ପଡ଼ିଗଲା । ବଉଳ ଫୁଲ ଉପରେ ସ୍ପଟଲାଇଟ୍—ମାଳାର ହାତ ବଉଳ ମାଳ ପାଖରେ)

—ବିଶ୍ରାମ—

**ଦଶ ବର୍ଷ ପରେ**

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ କଲିକତାର ଗୋଟାଏ ଉଚ୍ଚକୋଠୀର ଘର । ଘରର ମାଲିକ ହେଉଛନ୍ତି ଶ୍ରୀକାନ୍ତ ରାୟ । ଗୋଟାଏ କ୍ୟାନ୍‌ଭାସ ନେଇ ଛବି ଆଙ୍କିବାରେ ବ୍ୟସ୍ତ ସେ । ଘରଟିରେ ଟେବୁଲ ଗୋଟାଏ, ଟୂଲ ଦୁଇ ତିନଟା, ଚେୟାର ଦୁଇଟା, ବହି rackରେ ବହି, ଫିଲ୍‌ମଫେୟାର, ଘରଟା ଅପରିଷ୍କାର, ଖଣ୍ଡିଆ ସିଗାରେଟ ମୁହଁରେ । ଟେବୁଲ ଲାଇଟ ଜଳୁଥାଏ । ସମୟ—ରାତି । ]

ଭାନୁ—( ପଶିଆସିଛୁ ) ଏମ୍. ଏ. ପରୀକ୍ଷାରେ ତୁ, ମୁଁ ଦୁହେଁଯାକ ଏକା ସାଙ୍ଗରେ ପାସ୍ କରିଛେ ଶ୍ରୀକାନ୍ତ !

ଶ୍ରୀକାନ୍ତ—( ଛବି ଆଙ୍କୁ ଆଙ୍କୁ ଖୁବ୍ ଜୋର୍‌ରେ ହସିଉଠିଲି )

ଭାନୁ—ଏମିତି ହସିଲୁ ଯେ ? ( ସୁଇଚ୍ ଟିପିଲା )

ଶ୍ରୀକାନ୍ତ—ନାହିଁ ଭାଇ, ଭାବିଥିଲି ଏ ବର୍ଷ ବି ଗଲା ତିନିବର୍ଷ ପରି ତତେ ବିଦାୟ ସମ୍ଭାଷଣ ଜଣାଇଥାନ୍ତି; କିନ୍ତୁ ସେ ମୋର ଦୁର୍ଭାଗ୍ୟ ଯେ ମୁଁ ପାସ୍ କରିଗଲି ।

ଭାନୁ—ଆଶ୍ଚର୍ଯ୍ୟ !!!

ଶ୍ରୀକାନ୍ତ—ଆଶ୍ଚର୍ଯ୍ୟ ହେବାର ଏଥିରେ କିଛି ନାହିଁ ଭାନୁ, ଖୁସି ହେବାର ଆମୋଦ ନିକଟରେ ଏ ସବୁ ତୁଚ୍ଛ ।

ଭାନୁ—କିନ୍ତୁ ଭାଇ, M. A. ଡିଗ୍ରୀ ତ !

ଶ୍ରୀକାନ୍ତ—ମୋ ପରି ଲୋକ ଜୀବନରେ ଏମିତି ଶହ ଶହ ଡିଗ୍ରୀର କିଛି ମୂଲ୍ୟ ନାହିଁ । ବହି ଘୋଷି ଆମେ ପରୀକ୍ଷାରେ ପାସ୍ କରୁ, ବଡ଼ ବଡ଼ କଥା ଲେଖୁ, ବଡ଼ ବଡ଼ କଥା କହୁ, ବଡ଼ ବଡ଼ ଆଦର୍ଶକୁ ବିଶ୍ଳେଷଣ କରୁ । କିନ୍ତୁ ଏ ଯୁନିଭର୍ସିଟିର ଷ୍ଟାମ୍ପଟା ଦରକାର ଖାଲି ଚାକିରି ପାଇଁ । ଅନ୍ୟ କୌଣସି କାମ ପାଇଁ ଅନ୍ୟ କୌଣସି କ୍ଷେତ୍ରରେ ସେ ଡିଗ୍ରୀ ଆମକୁ ଦିଏନି ପ୍ରେରଣା, ଉତ୍ସାହ । ଏ ଡିଗ୍ରୀ ଅକାମୀ, ଅଚଳ ହୋଇପଡ଼େ ଅନ୍ୟ ସବୁଠି । ମୁଁ କିନ୍ତୁ ଅପେକ୍ଷା କରିଛି ଜୀବନର ଆଉ ଗୋଟାଏ ଡିଗ୍ରୀକୁ ।

ଭାନୁ—ଓ, ତୋର ଆଦର୍ଶ, ତୋର କଳାଚର୍ଚ୍ଚା କଥା ତ !

ଶ୍ରୀକାନ୍ତ—ହଁ ଭାନୁ, ମୋ ଆଦର୍ଶ ଉପରେ ହୁଏତ ଅନ୍ୟ କାହାରି ଆସ୍ଥା ନ ଥାଉ, ଭରସା ନ ଥାଉ, ହେଲେ ତତେ ସ୍ୱୀକାର କରିବାକୁ ପଡ଼ିବ । ଆଖି ଆଗରେ ଗୋଟାଏ ପରିକଳ୍ପନା ନେଇ, ଗୋଟାଏ ମହତ୍ ଆଦର୍ଶ ରଖି, ମୁଁ ମୋର କର୍ମ ଯୋଜନା ସ୍ଥିର କରିଛି । ସେ ହେଉଛି ଆମ ଦେଶର ଏ ଅଧୋପତିତ ଚିତ୍ରଶିଳ୍ପ, ଯେଉଁଥିରେ ଚାଲିଛି ଆଜି ବ୍ୟଭିଚାର । ଆର୍ଟ ନାଁରେ ପ୍ରବୃତ୍ତିର ସ୍ୱେଚ୍ଛାଚାର ।

ଭାନୁ—ଠିକ୍ କହିଛୁ, ଶ୍ରୀକାନ୍ତ ! ବର୍ତ୍ତମାନ କାଳର ମୌସୁମୀରେ ଭାସିଆସୁଛି ଗୋଟାଏ ଦାରୁଣ ଦୁରଭିସନ୍ଧି ପ୍ରତି କ୍ଷେତ୍ରରେ ଏ ଦେଶର ଯୁବଶକ୍ତିକୁ ଉଦ୍‌ଭ୍ରାନ୍ତ କରିବାପାଇଁ ଚାଲିଛି ଆପ୍ରାଣ ଚେଷ୍ଟା । ଶିକ୍ଷା ପ୍ରତିଷ୍ଠାନରେ ସହଶିକ୍ଷା ନାମରେ ଚାଲିଛି ପ୍ରଜାପତି ସଂଘ—ସାହିତ୍ୟର ପବିତ୍ର ପଣତତଳେ ଚାଲିଛି କାମକଳାର ପ୍ରଚାର—ରଙ୍ଗମଞ୍ଚର ପରଦାରେ, ପାଠ୍ୟ ପୁସ୍ତକର ପ୍ରଚ୍ଛଦପଟରେ ଚାଲିଛି ଓଡ଼ିଆ ନାରୀର ଅର୍ଦ୍ଧନଗ୍ନ ରୂପ ପ୍ରଦର୍ଶନ ଆଉ ଚଳଚିତ୍ର ନାମରେ ଚାଲିଛି ଜଘନ୍ୟ ବ୍ୟଭିଚାର, ପ୍ରିୟାପ୍ରୀତି ତୋଷଣ ଆଉ ଅପରିପକ୍ୱ ଖିଆଲର ବ୍ୟର୍ଥ ସୃଜନା । ଏ ସବୁ ଆମ ଜାତୀୟ ଶକ୍ତିକୁ ନିଷ୍ଠୁର ଭାବରେ ଧଳାଡଳ କରି ହତ୍ୟା କରୁଛି ।

ଶ୍ରୀକାନ୍ତ—ଆରେ, ସେଇ ସବୁ ବିରୁଦ୍ଧରେ ମୋର ଏଇ ସାଧନା । ମୋର ଏଇ ଆଦର୍ଶ ଗୋଟାଏ ଗୋଟାଏ ଅଗ୍ନିପରୀକ୍ଷା । ମୁଁ ଚାହେଁ ଚଳଚିତ୍ର ଗଢ଼ିବାକୁ, ଯେଉଁ ଚଳଚିତ୍ର ହେବ ଦେଶରେ ପ୍ରଗତିର ପଥପ୍ରଦର୍ଶକ ।

ଭାନୁ—ତୁ କ'ଣ ପାରିବୁ ଶ୍ରୀକାନ୍ତ, ଚଳଚିତ୍ର ମାଧ୍ୟମରେ ତୁ ଯଦି ଦେଇ ଜାତିର ସେବା କରିବାକୁ ଯାଉ, ତୁ ହୁଏତ ଆଦର୍ଶ ହିସାବରେ ଏ ସମାଜରେ ନିଜକୁ ପ୍ରତିଷ୍ଠିତ କରିପାରିବୁ। କିନ୍ତୁ ଜଣେ ବ୍ୟବସାୟୀ ହିସାବରେ ତୁ ହାରିଯିବୁ। ମଣିଷର ରୁଚି ଆଜି ଆନ ସ୍ତରକୁ ଚାଲିଯାଇଛି ଶ୍ରୀକାନ୍ତ, ତାକୁ ଫେରେଇ ଆଣିବାକୁ·····

ଶ୍ରୀକାନ୍ତ ସମୟ ଲାଗିବ ତ ? ହେଲେ ମୋର ପୂର୍ଣ୍ଣ ବିଶ୍ୱାସ ଅଛି, ମୋ ଚେଷ୍ଟା ସାଫଲ୍ୟମଣ୍ଡିତ ହେବ।

ଭାନୁ—ଲକ୍ଷ୍ମୀର ବରପୁତ୍ର ହୋଇ ତୁ ଜନ୍ମ ହୋଇଛୁ, ରତ୍ନାଗଡ଼ ଷ୍ଟେଟ୍‌ର ଭାବୀ ଉତ୍ତରାଧିକାରୀ ହିସାବରେ ଅଜସ୍ର ଅର୍ଥ ତୋ ପାଖରେ ଅଛି। ତା ସାଙ୍ଗରେ ରହିଛି ତୋର ଶିକ୍ଷା, ତୋର ଏ ନିଃସ୍ୱାର୍ଥ ଆଦର୍ଶ, ତୁ ପାରିବୁ ଶ୍ରୀକାନ୍ତ, ନିଶ୍ଚୟ ପାରିବୁ।

ଶ୍ରୀକାନ୍ତ—ସେଇଥିପାଇଁ ତ ମୋର ଏ ଛ'ବର୍ଷର ସାଧନା ଭିତରେ ମୋ ଚେଷ୍ଟାରେ ମୁଁ କେବେ ତ୍ରୁଟି କରିନାହିଁ। ଏଇ ଦୀର୍ଘଦିନ ଧରି ସେ ସାଧନାପଥରେ ମୁଁ ଆଗେଇ ଚାଲିଛି ଜଣେ ବିଶିଷ୍ଟ ଚିତ୍ର ପରିଚାଳକଙ୍କ ତତ୍ତ୍ୱାବଧାନରେ।

ଭାନୁ—ତୋ ସାଧନାରେ ତୁ ଜୟୀ ହ' ଶ୍ରୀକାନ୍ତ—ଏତିକି ମୋର କାମନା।

ଶ୍ରୀକାନ୍ତ—ଆଉ ତୁ···???

ଭାନୁ - ମୁଁ !!!

ଶ୍ରୀକାନ୍ତ—ହଁ, ଏମ. ଏ. ଡିଗ୍ରୀଟା ଯେତେବେଳେ ହାସଲ କରିଛୁ, ପୁଣି ଫାଷ୍ଟକ୍ଲାସ, ଫେରିଯିବୁ ଗାଁ ମାଟିକୁ—ତା'ପରେ ଗାଁ ମାଟି ଛାଡ଼ି କେଉଁ କଲେଜରେ ଜଏନ କରି, ଆଉ ଚାକିରି ପାଇଲା ପରେ ସମସ୍ତଙ୍କର ଯାହା ହୋଇଥାଏ, ତାହାହିଁ କରିବୁ—ଆଉ ତା'ରି ଭିତରେ ତୋର ସବୁ ଆଦର୍ଶ ନିବ ସମାଧି—ତା'ପରେ ବିବାହ ବନ୍ଧନ, ଆଉ ସେଇ ବନ୍ଧନ ଭିତରେ ମଣିଷର ଆତ୍ମବିଲୋପ।

ଭାନୁ—କ'ଣ ଗୁଡ଼ାଏ ତୁ କହିଯାଉଛୁ ?

ଶ୍ରୀକାନ୍ତ—କାହାଣୀ ନୁହେଁ, ଖାଣ୍ଟି ସତ କଥା । ତା'ପରେ ସନ୍ତାନ ସନ୍ତତି, ଘରବାଡ଼ି, ଗାଡ଼ିମଟର, Life Insurance, ଯା'ର ଭିତରେ ତୁ ଭୁଲିଯିବୁ ଛାତ୍ରଜୀବନର ସବୁ ଆଦର୍ଶ, ସବୁ ସ୍ୱପ୍ନ ତୋର ଆତ୍ମଗୋପନ କରିବ ଯା'ର ଭିତରେ ।

ଭାନୁ—ତୁ ଜାଣିନୁ ଶ୍ରୀକାନ୍ତ, ବଡ଼ଲୋକ ହେବାର ଦିବାସ୍ୱପ୍ନ ମୋ ମନ ଭିତରେ ସ୍ଥାନ ଦେଇନ, ଜୀବନ-ସଂଗ୍ରାମରେ ମୁଁ ଗୋଟାଏ ପରାସ୍ତ ସୈନିକ ! ମୋର ପାରିପାର୍ଶ୍ୱିକ ଅବସ୍ଥା ମୋ ପାଇଁ ଯୋଗାଇ ଅଛି ଶିଳାକଣ୍ଟକର ବାସ୍ତବ ଚଲାପଥ । ପିଲାଦିନୁ ମା' ମରିଥିଲେ । ବି. ଏ. ପାସ୍ କଲା ପରେ ବାପା ମୋର ଚାଲିଗଲେ । ଘରେ ମୋର ଶୂନ୍ୟତା, ସେଇ ମୋର ଆଜିର ସମ୍ମାନ ପାଇଁ ସ୍ୱାଗତ ଜଣାଇବ । ସେଇ ମହାଶୂନ୍ୟତା ଭିତରେ ଅତି ନିଃସ୍ୱ ହୋଇ ମୁଁ କରିବ ମୋ ବାପାଙ୍କ ଆଦେଶ ପାଳନ ।

ଶ୍ରୀକାନ୍ତ—ଭାନୁ !

ଭାନୁ—କୋଳେଇ କାଖେଇ, ବାପା ମା'ର ସ୍ନେହଦେଇ ଯୋଉ ବାପା ମତେ ମଣିଷ କରିଥିଲେ, ଅଭାବ ଅନାଟନର ବେଢ଼ି ଭିତରେ ନିଜେ ରହି, ଯେ ଆଗେଇ ଆସିବାର ପ୍ରେରଣା ଦେଇଥିଲେ, ତାଙ୍କର ଶେଷ ସମୟରେ ମୁଁ କିଛି କରି ପାରିଲିନି ରେ ଶ୍ରୀକାନ୍ତ ! ପଦେ କଥା, ଟିକିଏ ଆଶ୍ରୟ, ଟିକିଏ ସେବା—କିଛି କରି ପାରିଲିନି ।

ଶ୍ରୀକାନ୍ତ—ଭାନୁ ! ତୁ ପିଲାଙ୍କ ପରି ଏ କ'ଣ କହୁଛୁ ?

ଭାନୁ—ମୋ ବାପା ଥିଲେ ପୁରୁଣା କାଳର ସଂସ୍କୃତରେ ଏମ. ଏ. । ଇଚ୍ଛା କରିଥିଲେ ସେ ହୁଏତ ଗୋଟାଏ ବଡ଼ ସରକାରୀ ଚାକିରି କରି ପାରିଥାନ୍ତେ, ହେଲେ ଦେଶର ଜାତୀୟ ଆନ୍ଦୋଳନରେ ଭାଗ ନେଇ ତାଙ୍କୁ କାରାବରଣ କରିବାକୁ ପଡ଼ିଲା । ତାପରେ ଗାଁ ମାଟିରେ ସେ ଗଢ଼ିଲେ ଗୋଟାଏ ଶିକ୍ଷା ଅନୁଷ୍ଠାନ । ବହୁତ ଝଡ଼ ତୋଫାନ ପରେ ସେ ଆଜି ଶିକ୍ଷା ବିଭାଗର ସ୍ୱୀକୃତି ପାଇଛି । ଏବେ ବି ଯାହାର କେତେକ ଦାୟିତ୍ୱ ମୋ ଉପରେ, ଆଜି ମୁଁ M.A. ପାସ୍ କରି ହେବି ଜଣେ ସାଧାରଣ ଗାଁ ସ୍କୁଲର ଶିକ୍ଷକ ।

ଶ୍ରୀକାନ୍ତ—ଭାନୁ !!!

ଭାନୁ—ଏତିକି କରି ଯଦି ତାଙ୍କ ଋଣ କିଛି ପରିଶୋଧ କରିପାରେ, ତେବେ ଯାଇଁ ମୁଁ ଶାନ୍ତି ପାଇବି ।

ଶ୍ରୀକାନ୍ତ—ଏ ତୋର କେବଳ ଆଦର୍ଶ ନୁହେଁ ଭାନୁ—ଅପୂର୍ବ ସ୍ୱାର୍ଥତ୍ୟାଗ । ତୋର ଆଦର୍ଶର ଜୟ ହେଉ ।

ଭାନୁ—ଆଜି ଆମେ ଦୁହେଁ ଦୁଇଟି ଆଦର୍ଶ ନେଇ ବିଚ୍ଛିନ୍ନ ହୋଇଯିବାରେ ଶ୍ରୀକାନ୍ତ ! ଆମ ଭିତରେ ଏଇ ଆତ୍ମୀୟତା ହିଁ ବଡ଼ ହୋଇ ରହିବ । ଆଜିର ଏଇ ଦେଖା ହିବ ଆମର ଶେଷ ଦେଖା ।

ଶ୍ରୀକାନ୍ତ—ଭାନୁ ! ସହର ମୋର ଶିକ୍ଷାକ୍ଷେତ୍ର ହେଲେ ହେଁ ଗାଁ-ମାଟି ମୋର କର୍ମକ୍ଷେତ୍ର । ସେଇ ସବୁଜ ବନାନୀ, ସେଇ ସରଳ ଜୀବନର ଆକର୍ଷଣକୁ ମୁଁ ଏଡ଼ାଇ ପାରିବିନି । କେତେବେଳେ ହେଲେ ତ ଦେଖାହେବ ! ଆମର ଆଦର୍ଶ ଅଲଗା ହେଲେ ବି ହୃଦୟ, ମନ ଅବିଚ୍ଛିନ୍ନ; କେହି କାହାରିକୁ ଭୁଲି ପାରିବାନି ।

ଭାନୁ – କାନ୍ତ !

ଶ୍ରୀକାନ୍ତ—ଭାନୁ !!!

—କ୍ରମଶଃ ଅନ୍ଧାର ହେଲା—

## ଦ୍ୱିତୀୟ ଦୃଶ୍ୟ

[ ଶଶାଙ୍କ ପଟ୍ଟନାୟକଙ୍କ ପୂର୍ବ ଅଳିନ୍ଦ, ସମୟ ଦିନ ଦଶଟା, କଲ୍ୟାଣୀ ଗୋଟାଏ ଚିଠି ପଢ଼ି ପଢ଼ି ଆସିଲେ ]

କଲ୍ୟାଣୀ—( ନୀରବରେ ଚିଠି ପଢ଼ୁଥାନ୍ତି )

ପାଣ୍ଡୁପତ୍ର – ପତ୍ରପଟରୁ ) ସା'ନ୍ତେ କ'ଣ ଲେଖିଛନ୍ତି ଆଜି !

କଲ୍ୟାଣୀ—ହଁ, ତାଙ୍କର ସେଠାକାର ଖବର ସବୁ ଭଲ । ଏ ୨।୩ ମାସ କାମ ଭିଡ଼ ଯୋଗୁଁ ସେ ବୋଧେ ଏଠା ଭିତରେ ଆସି ପାରିବେନି । ଘରର ସମସ୍ତ ଦାୟିତ୍ୱ ତମକୁ ବୁଲେଇବାକୁ ପଡ଼ିବ ।

ପଶୁପତି—ଆଉ ଦେଇଙ୍କ ପାଠ ପଢ଼ା କଥା କିଛି ଲେଖି ନାହାନ୍ତି ?

କଲ୍ୟାଣୀ—ହଁ, ସେ କଥା ବି ଲେଖିଛନ୍ତି ?

ପଶୁପତି—କଟକରୁ ମାଷ୍ଟର ବାବୁ କେବେ ଆସୁଛନ୍ତି ? ତାଙ୍କ ପାଇଁ ସବୁ ଘରଫର ଠିକ୍ ହୋଇଯାଇଛି ।

କଲ୍ୟାଣୀ—ନାଇଁ, ଅବିକା କଟକରୁ ମାଷ୍ଟର ଆସି ପାରିବେନି ବୋଲି ଲେଖିଛନ୍ତି । ତାଙ୍କର କ'ଣ ଅସୁବିଧା ଅଛି, ଆସୁ ଆସୁ ୩।୪ ମାସ ଡେରିହବ ।

ପଶୁପତି—ତା'ହେଲେ ଦେଇଙ୍କ ପାଠପଢ଼ା କେମିତି ହବ ମା ? ତାଙ୍କର ପରା ଏଇଟା ଶେଷ ପରୀକ୍ଷା !

କଲ୍ୟାଣୀ—ହଁ, ମାଟ୍ରିକ୍ ପରୀକ୍ଷା ।

ପଶୁପତି—ଗୋଟାଏ କଥା ଥିଲା ଯେ ମା······

କଲ୍ୟାଣୀ—କୋଉ କଥା ?

ପଶୁପତି—ଏଇ ବିଳାସପୁର ଚୌଧୁରୀ ସାହିରେ ଜଣେ କଲିକତାରୁ କ'ଣ ୨।୩ଟା ପାସ୍ କରି ଆସିଛନ୍ତି ବୋଲି ଲୋକେ କହୁଛନ୍ତି । ସେ କୁଆଡ଼େ ହାଇସ୍କୁଲରେ ପଢ଼ାଥାନ୍ତି । ଏ ଗାଁ କଥା କ'ଣ ଜାଣିନି ମା, ତାଙ୍କୁ ସହି ପାରିଲେ ନି । ତାଙ୍କୁଇ ଆଣି ଏଇ ୩।୪ ମାସ ଦେଇଙ୍କ ପଢ଼ା ଦାୟିତ୍ୱ ଦେଲେ ହୁଅନ୍ତା ନାଇଁ ? ଶୁଣିଛି, ପିଲାଟି ଭାରି ଗୁଣର, ସ୍ୱଭାବ ଚରିତ୍ର ଭାରି ଭଲ ।

କଲ୍ୟାଣୀ—ହଉ, ତମେ ଯଦି ଠିକ୍ ଭାବୁଛ, ତାଙ୍କୁ କୁହ !

ପଶୁପତି—ଆଜି କ'ଣ ମା ତାଙ୍କୁ ଖବର ଦେବି ?

କଲ୍ୟାଣୀ—ହଁ, କଥାକୁ ପଠେଇଦିଅ; ଆଉ ଟଙ୍କା ପଇସା କଥା···

ପଶୁପତି—ଏ ଘରେ କ'ଣ ସେ କଥାରେ କେବେ ଖିଲାପ ହେଲାଣି ନା ହବ ? ସେ ବାଲେ ଆସିଲେ ଠିକ୍ ହେଇ ଯିବନି !

କଲ୍ୟାଣୀ—ଆଚ୍ଛା ହଉ ।
ପଶୁପତି—ମୁଁ ତା'ହେଲେ ଆସେ ଅ.ଜ୍ଞା !
କଲ୍ୟାଣୀ—ଜଗାକୁ ଟିକିଏ ଡାକି ଦିଅ ତ !
ପଶୁପତି—ଜଗା, ଜଗା ( କହି ବାହାରକୁ ଚାଲିଗଲେ )

— ଅନ୍ଧାର ହେଲା —

## ତୃତୀୟ ଦୃଶ୍ୟ

[ ଶଶାଙ୍କ ପଟ୍ଟନାୟକଙ୍କ ଘରର ଡ୍ରଇଂ ରୁମ୍, ଆଗ ଦିନର ସବୁ ଆସବାବ ପତ୍ର । ସମୟ—ଆସନ୍ନ ସନ୍ଧ୍ୟା ]

ଜଗା—ଏଇଠି ବସନ୍ତୁ ଆଜ୍ଞା ! ମୁଁ ମାଆଙ୍କୁ କହିଦେଇ ଆସେ ।

( ଜଗା ଚାଲିଗଲା ଭିତରକୁ । ଭାନୁର ମନରେ ଉଙ୍କିମାରେ ସେଇ ଅତୀତ ଦିନର ସ୍ମୃତି । ପଶି ଆସନ୍ତି କଲ୍ୟାଣୀ—ଚମକି ଉଠେ ଭାନୁ । )

ଜଗା—ଏଇ ହଉଛନ୍ତି ମା'-ମାନ୍ୟା'ଣୀ !

ଭାନୁ—( ପ୍ରଣାମ କରେ )

କଲ୍ୟାଣୀ ବସନ୍ତୁ । ଠିଆ ହେଲେ କାହିଁକି ?

ଭାନୁ—ମତେ ସେମିତି 'ଆଜ୍ଞା ଆପଣ' କହିବେନି ! ଆପଣ ଗୁରୁଜନ, ମତେ କି ଚହ୍ନିପାରୁ ନାହାନ୍ତି ଆପଣ ?

କଲ୍ୟାଣୀ—ଠିକ୍ ଚହ୍ନିଛି ବାପା ! ମୁଁ ବୁଝିଛି ଭୁଲଟା ମୋ ଆଡ଼ୁ ହୋଇ ଯାଇଛି । ଆଜିକାଲିର ଭଦ୍ରତା ଦୃଷ୍ଟିରୁ ମୁଁ ଏକଥା କହିଥିଲି, କିନ୍ତୁ ପ୍ରକୃତରେ ତମେ ମୋ ପୁଅପରି । ତମ ସହିତ ସେହିପରି ବ୍ୟବହାର କରିବା ଉଚିତ ।

ଭାନୁ—କ୍ଷମା କରିବେ, ଯଦି ଆପଣଙ୍କ ମନରେ କଷ୍ଟ ଦେଇଥାଏ···

କଲ୍ୟାଣୀ—ଏଥିରେ କଷ୍ଟ, କ'ଣ ବାପା ! ବରଂ ମୁଁ ଭାରି ଖୁସି । ଆଜିକାଲିର ଶିକ୍ଷିତ ପିଲାମାନେ, ଏତେ ଯେ ନମ୍ର ହୋଇ ପାରନ୍ତି, ସେ ଧାରଣା ମୋର ନ ଥିଲା । ମୁଁ ଠିକ୍ ବୁଝି ପାରୁଛି ବାପା, ତମେ ଏ କାମ ଠିକ୍ ତୁଲେଇ ପାରିବ । ମୋର ଆଉ କିଛି ସନ୍ଦେହ ନାହିଁ ।

ଭାନୁ—ଆପଣ ମୋତେ ଭୁଲି ଯାଇଛନ୍ତି, ମୁଁ······

କଲ୍ୟାଣୀ—ଆଉ ବାପା, କହିବାର କିଛି ଦରକାର ନାହିଁ, ତମକୁ ଦେଖିଲା ବେଳୁ ମୁଁ ସବୁ ଜାଣି ପାରିଛି, ଆଉ ମୋ ପାଖରେ ପରିଚୟ ଲୋଡ଼ା ନାହିଁ ।

ଭାନୁ - କିନ୍ତୁ !!!

କଲ୍ୟାଣୀ—ପୁଣି—କିନ୍ତୁ କାହିଁକି ବାବା ? ତମ ହାତରେ ମୋ ମା'ର ପାଠପଢ଼ାର ଦାୟିତ୍ୱ ଦେବାରେ ମୋର କିଛି ଆପତ୍ତି ନାହିଁ । ମୁଁ ଆଶା କରୁଛି ତମେ ସବୁଦିନ···

ଭାନୁ—କିନ୍ତୁ ସବୁଦିନ ତ ମୁଁ ଏଠି ରହି ପାରିବିନି ?

କଲ୍ୟାଣୀ—କାହିଁକି ???

ଭାନୁ—ସେ ବହୁତ କଥା । ସଂକ୍ଷେପରେ ଏତିକି ହବ ଯେ, ଯୋଉ ଆଦର୍ଶ ନେଇ ଏଇ ଗାଁ ସ୍କୁଲରେ ମୁଁ ଗଲା ଆଠମାସ ଧରି କାମ କଲି, ତା ମୋର ସଫଳ ହେଲାନି । କାରଣ ଗାଁ ଲୋକଙ୍କ ବିଶ୍ୱାସଭାଜନ ହେବାରେ ମୁଁ ଭାଗ ନେଇ ପାରିଲିନି । ସମସ୍ତଙ୍କର ସନ୍ଦେହର ପାତ୍ର ହେଲି ।

କଲ୍ୟାଣୀ—ତମଭଳି ଲୋକଙ୍କୁ ସେମାନେ ସନ୍ଦେହ କରି ପାରିଲେ ? ଭଲ କରିଛ, ସେମାନଙ୍କ ସହିତ ବରାବର ନ ହୋଇ ଭଲ କରିଛ । ବେଶ୍, ଏଠି ତମେ ଯେତେ ଦିନ ଅଛ, ତା'ର ପାଠପଢ଼ା ଦାୟିତ୍ୱ ନେବ । ଏଥିପାଇଁ ଉପଯୁକ୍ତ ପାରିଶ୍ରମିକ ମୁଁ ବନ୍ଦୋବସ୍ତ କରିଦେବି ।

ଭାନୁ—ଦେଖନ୍ତୁ, ଟଙ୍କା ପଇସା କଥା ଉଠାଇ ମୋତେ ଲଜ୍ଜା ଦିଅନ୍ତୁନି ।

କଲ୍ୟାଣୀ—ହେଲା, କେବେ ସେ କଥା କହି ଆମକୁ ଆଉ ଲଜ୍ଜିତ କରିବନି ।

ଭାନୁ—ବହୁତ ଧନ୍ୟବାଦ । ଆପଣଙ୍କ ନିକଟରେ କୃତଜ୍ଞ ମୁଁ ।

କଲ୍ୟାଣୀ—ଜଗା, ଦେଖେ ତ ମାଳା କୁଆଡ଼େ ଗଲା ? ( ଜଗା ଭିତରକୁ ଚାଲିଗଲା )
ହଁ, ତମ ଗ୍ରାମର ଏଇଟା ହେଲା ଏକାଦଶ ଶ୍ରେଣୀ । ଏତେବଡ଼ ହେଲାଣି, ତଥାପି କ'ଣ ଟିକଏ ବୁଦ୍ଧି ହେଲା ? ଯାହା ବା ଟିକଏ ହେଇଥାନ୍ତା, ଏଣେ ବାପାଙ୍କ ମୁହଁ ପାଇ ସେ କ'ଣ ଆଉ କାହା କଥା ଶୁଣୁଛି ?

ଜଗା—ଦେଇ ତ ଭିତରେ ନାହାନ୍ତି ?

କଲ୍ୟାଣୀ—ହେଇ ଶୁଣ, ଏଇଠି ଥିଲା ! ଦଣ୍ଡକ ଭିତରେ କୁଆଡ଼େ କି...

ଜଗା—ସବୁ କୁ, ଗ୍ରା, ଯାଇଁପରି ସେଇ ବଉଳ ତୋଟାରେ, ଗାଁ ଝିଅଙ୍କ ମେଳରେ ! ଯେତେବେଳେ ଦେଖିବ ସେଠି କିଛି ନା କିଛି ଗୋଟାଏ କାମ ଲାଗିଥିବ । ଫୁଲତୋଳା, ଗଛଚଢ଼ା, କୋଳିପରି ନଇଲେ ଗୀତ ବୋଲା । ବୁଝିଲ ମାଆ, ଏ ସାଇ ଟୋକାଗୁଡ଼ାକ ଯାହା ଉତ୍ପାତ ହଉଛନ୍ତି—ଓହୋ, କହନ୍ତୁ ନାହିଁ ଆଜ୍ଞା !

କଲ୍ୟାଣୀ--ମେଢକ ଥାଉ, ତୁ ଗଲୁ ଡାକି ଆଣିବୁ । ମାଷ୍ଟରବାବୁ ପରି ଆସି କେତେବେଳୁ ବସିଛନ୍ତି !

ଜଗା—ଏଇ ଗଲି ଆଇଲି । ( ଚାଲିଗଲା ବାହାରକୁ )

କଲ୍ୟାଣୀ—ତମେ ଟିକଏ ଏଇଠି ବସ କି ପୁଅ, ମୁଁ ଟିକେ ଜଳଖିଆ ଆଣେ ।

ଭାନୁ – ନାହିଁ ମାଉସୀ, ସେ ସବୁ କିଛି ଦରକାର ନାହିଁ ।

କଲ୍ୟାଣୀ—ମାଉସୀ ବୋଲି ଡାକୁଛ ପରା, ମା'ର ଅବାଧ୍ୟ କ'ଣ ପୁଅ ହୁଏ ? ମା'ର ଶାସନ ମାନି ଚଳିବାକୁ ସେ ବାଧ୍ୟ ।

ଭାନୁ—ବେଶ୍ , ସେ ମୋର ଭାଗ୍ୟ !!! ( କଲ୍ୟାଣୀ ଚାଲିଗଲେ, ଭାନୁର ସବୁକଥା ମନେ ପଡ଼େ—ସେ ଉଠି ଘରର ଚାରି ପାଖ ଦେଖିଲା, ଅଜଣା ଆଶଙ୍କା ମଧ୍ୟ ଲୁଚି ରହିଥାଏ )

ମାଳା—( ଗୀତ ଗାଇ ଡେଇଁ ଡେଇଁକା ଆସୁ ଆସୁ ) କାହାକୁ ଖୋଜୁଛନ୍ତି ?

ଭାନୁ—ଏଇଟା ଶଶାଙ୍କ ବାବୁଙ୍କର ଘର ନା ?

ମାଳା—ହଁ, ସେ ଘରେ ନାହାନ୍ତି ।

ଭାନୁ—ଆପଣ ଆପଣ କ'ଣ ?
ମାଳା—ହଁ, ମୁଁ ତାଙ୍କର ଝିଅ । କ'ଣ ଦରକାର ?
ଭାନୁ—ମୁଁ.........
ମାଳା—ଓ, ଆପଣ ବୋଧହୁଏ ଚାକିରି ଖୋଜି ଆସିଛନ୍ତି ?
ଭାନୁ—ବାଃ, ଦେଖୁଛି ମଣିଷର ମନକଥା ଆପଣ ବେଶ୍ ବୁଝି ପାରନ୍ତି ।
ମାଳା—ବାପାଙ୍କ ପାଖକୁ ଅନେକ ଏମିତି ଆସନ୍ତି । ତା' ଛଡ଼ା ଆପଣଙ୍କ ଚେହେରା ଦେଖି ସେଇଆ ମନେହୁଏ । କିନ୍ତୁ ଆଜିକାଲି ତ ଆଉ ଚାକିରି ମିଳୁନାହିଁ ?
ଭାନୁ—ଆପଣ ମୂଳରୁ ଏମିତି ନିରାଶ କରି ଦେଉଛନ୍ତି ? ଏଠି କିଛି ଚାକିରି ମିଳିବ ନାହିଁ ?
ମାଳା—ଏଠି କି ଚାକିରି କରିବେ ଆପଣ ?
ଭାନୁ—ଶୁଣିଥିଲି ମିଃ ପଟ୍ଟନାୟକଙ୍କର ଜଣେ ଟ୍ୟୁସନ୍ ମାଷ୍ଟର ଦରକାର ।
ମାଳା—ହଁ, ଦରକାର ଅଛି । କିନ୍ତୁ ଆପଣ କ'ଣ ଇଂଲିସ୍ ପଢ଼େଇ ପାରିବେ ?
ଭାନୁ—ଚେଷ୍ଟା କରିବି ଆଜ୍ଞା !
ମାଳା—ଶିକ୍ଷାଦୀକ୍ଷା କେତେଦୂର ?
ଭାନୁ କ'ଣ କହିଲେ ?
କଲ୍ୟାଣୀ—( ଜଳଖିଆ ନେଇ ପଶି ଆସିଲେ ) ଯାହା ତ ପଢ଼ୁଛି ପଢ଼ୁଛି, ସାଧାରଣ ଭଦ୍ରତା ବି ଶିଖିଲୁନି ?
ମାଳା—କ'ଣ ବୋଉ ?
କଲ୍ୟାଣୀ—ଯାହାଙ୍କୁ ଶିକ୍ଷାଦୀକ୍ଷା କଥା ପଚାରୁଛୁ ସେ କିଏ ଜାଣୁ ?
ମାଳା—ଜାଣିବି କେମିତି ଯେ ? ଭଦ୍ରଲୋକ ଚାକିରି ଖୋଜି ଆସିଛନ୍ତି···
କଲ୍ୟାଣୀ ଚାକିରି ଖୋଜି ଆସିନାହାନ୍ତି ଯେ, ତାଙ୍କୁ ଡାକି ଆଣି ଚାକିରି ଦିଆ ଯାଇଛି ।
ମାଳା ଚାକିରି ଦିଆଯାଇଛି !!!
କଲ୍ୟାଣୀ ହଁ, ତତେ ପଢ଼ାଇବାର ଚାକିରି !!!
ମାଳା—ଏଁ !! ( ବସିପଡ଼େ )
କଲ୍ୟାଣୀ— କ'ଣ ଭାବୁଛୁ କି ? ଏମ୍. ଏ. ଫାଷ୍ଟକ୍ଳାସ !

ମାଳା—( ନଥା ନ କହି ମଥାରେ ହାତଦେଇ ବସିପଡ଼େ )
କଲ୍ୟାଣୀ—ମୁଣ୍ଡରେ ହାତଦେଇ ବସି ପଡ଼ିଲୁ କ'ଣ ? ମାଷ୍ଟରଙ୍କୁ ନମସ୍କାର କର !
ମାଳା—( ନମସ୍କାର ଜଣାଏ )

କଲ୍ୟାଣୀ—ଆଚ୍ଛା, ମାଷ୍ଟରବାବୁ ଖାଉଥାନ୍ତୁ, ତୁ ଦେଖୁଥା, ମୁଁ ଟିକିଏ ସରବତ ଆଣୁଛି । ( ଚାଲିଗଲେ )

( ଭାନୁ ଖାଇବାରେ ଲଗିଲା )

ମାଳା – କ୍ଷମା କରିବେ ସାର୍, ମୋର ଭୁଲ୍ ହୋଇଛି । ଆଉ ଥରେ ଏମିତି କହିବିନି !

ଭାନୁ—ଦେଖ, ଅପରାଧଟା ବିଶେଷ ଗୁରୁତର । ସେମିତି କ୍ଷମା କରି ପାରିବିନି । ଆପାତତଃ ଗୋଟାଏ କଣ୍ଡିସନ୍‌ରେ ।

ମାଳା—କ'ଣ ହେଲା ?
ଭାନୁ – ଦହିବାଙ୍କର ସନ୍ଦେଶ ପ୍ଲେଟ୍‌ରୁ ··
ମାଳା – ନେଇ । ( ଖାଇବାକୁ ଲଗିଲା ) କିଛି ମନେ କରିବେନି ସାର୍, ଆପଣଙ୍କ ନାଁଟା···

ଭାନୁ - ମୋ ନାଁ ଭାନୁ !
ମାଳା – ( ନବାକ ଭାବରେ ହାତରେ ମିଠାଟା ଧରି ରହିଛି )
ଭାନୁ – ଏମିତି ରହିଗଲ ଯେ ! ନଅ ?
ମାଳା ( ମନେପଡ଼େ ହଜିଲା ଅତୀତ ) ବୋଉ, ଏ ନିଏ କାଣ୍ଡୁ ବୋଉ···

- ଆଲୋକ ଲିଭିଯାଏ –

# ଚତୁର୍ଥ ଦୃଶ୍ୟ

[ ଗ୍ରାମପଥ, ସମୟ ଅପରାହ୍ଣ । ଲୁଲୁ ବର୍ଣ୍ଣାଡ ଆସି ବେଡ଼ିଂଟା ପକେଇ ଦେଲ, ବେଡ଼ିଂ ଉପରେ ବସିପଡ଼ି— ]

ଲୁଲୁ— ଟାୟାର୍ଡ଼, ଡେଡ୍ ଟାୟାର୍ଡ଼ । ମାଇଁ ଗୁଡ୍ ଗଡ୍ ! ନିଉୟର୍କ ସିଟିରୁ ଆସି ଷ୍ଟ୍ରେଟ୍ ଏ ମଫସଲ ଭିତରେ ? ହରିବଲ୍, ଟେରିବଲ୍ ହରିବଲ୍ । ଏ ମିଲ୍ ଓନର ଲାଇକ୍ ମିଃ ପଟ୍ଟନାୟକ, ତାଙ୍କର ନ୍ୟାଟିଭ୍ ପ୍ଲେସ୍ ଏଇ ମଫସଲରେ ! ଟେରିବଲ୍ ଷ୍ଟ୍ରେଞ୍ଜ, ଆଇ କାଣ୍ଟ ବ୍ରିଦ୍ । ମନେହେଉଛି ଲିଭିଂଷ୍ଟୋନଙ୍କ ଅମଳର ଆଫ୍ରିକା ଜଙ୍ଗଲ ଭିତରେ ଲ୍ୟାଣ୍ଡ କରିଗଲି । ନୋ କମ୍ୟୁନିକେସନ, ନୋ ସିଭିଲାଇଜେସନ । ଡିଭାଇଡ୍ ଅଫ୍ ଲାଇଟ ଆଣ୍ଡ ଲାଇଫ । ଓ ମାଇଁ ସୁଇଟ ନିଉୟର୍କ ! ହାଓ ଲଭଲି !!!

ପଶୁପତି— ( ତରତରରେ ଚାଲି ଯାଉଥିଲା )

ଲୁଲୁ—ହ୍ୟାଲୋ ଜେଣ୍ଟଲମ୍ୟାନ, କ୍ୟାନ ୟୁ ହେଲ୍ପ ମି ? ଆଇ ମିନ୍···

ପଶୁପତି— ( ଆଶ୍ଚର୍ଯ୍ୟ ହୋଇ ଚାହିଁଲା ) ଓ, ମତେ କହୁଛ ?

ଲୁଲୁ— ଓ, ସିଓର, ଆଇ ମିନ୍ ଏଭେବାଟ ଅନ୍‌ଫୁଟ କଭର ନାଲପରେ ଇଉ ଆର୍ ଦ ଫାଷ୍ଟ ମ୍ୟାନ୍ ହୁମ୍ ଆଇ ସ !

ପଶୁପତି— କ'ଣ କହିଲ ??

ଲୁଲୁ— ଇଉ ଡୋଣ୍ଟ ଫଲୋ ମି ? ଆମ କଥା ବୁଝୁନା ?

ପଶୁପତି—ନାଇଁ ଆଜ୍ଞା, ତମ ଢଙ୍ଗ୍‌ଢାଙ୍ଗ୍, ଚାଲିଚଲନ, ବେଶ ପୋଷାକ, ତେଣିକି ଏ ବଙ୍କାଟେଢ଼ା କଥାବାର୍ତ୍ତା କିଛି ସମୁଝି ହଉନ ।

ଲୁଲୁ— ଓ, ଆଇ ଆମ୍ ଭେରି ସରି ! ଭେରି ସରି ! ଦେଖନ୍ତୁ ନ୍ୟାଟିଭ୍ ଲାଙ୍ଗ୍ୱେଜ ମାନେ ମଦର ଟଙ୍ଗ୍ ପୁରାପୁରି ଫରଗଟନ୍, ମନେ ନାଇଁ ।

ପଶୁପତି—ହଁ, ସେଇଥିପାଇଁ କଥାଗୁଡ଼ା ଅବାଗିଆ ଅବାଗିଆ ଲାଗୁଚି ।

ଲୁଲୁ—Yes Yes, You are right. I mean ଏଠି ଲଗେଜ ଗୁଡ଼ାକ ନବାପାଇଁ I mean, can you please make some arrangement.

ପଶୁପତି—ବୁଝିଲି, ଗୋଟାଏ ଲୋକ ଖୋଜୁଛନ୍ତି ତ ?

ଲୁଲୁ—Oh yes. Kindly ଯଦି ସେତକ arrange କରି ଦିଅନ୍ତେ… ଦେଖନ୍ତୁ ବାଟରେ busଟା ଖରାପ ହେଇଗଲା । With all this luggage, I had to walk nearly more then three miles ଆଉ ତିନ୍ ଚାର ମାଇଲ୍ । Totally unaccustomed, entirely foreign to this surroundings.

ପଶୁପତି—ନା, ଏଠି ତ ସେମିତି କେହି ମିଳିବେ ବୋଲି ମୋର ବିଶ୍ୱାସ ହଉନି । ଆଖ ପାଖରେ ତ ଏଠି ସେମିତି ଗାଁ ଗଣ୍ଡା ବି ନାହିଁ ।

ଲୁଲୁ—ମାନେ, No hope ! Again ମତେ with the luggage ଚାଲିବାକୁ ହବ ? Oh god.

ପଶୁପତି—ହଁ, ତା ଠିକ୍, ଚାଲିବାକୁ ନିଶ୍ଚେ ହବ । ( ଚାଲିଯାଉଥିଲି )

ଲୁଲୁ—If you please don't mind, ମୋର ଗୋଟାଏ request.

ପଶୁପତି—ପୁଣି ତ ବଙ୍କେଇଗଲେ ! ସିଧା ସଳଖ କଥା କହନ୍ତୁ । ଥରେ କହୁଛି ବୁଝି ହେଉନି । କଥାରେ ନାହିଁ, ନଈକେ ବାଙ୍କ, ଦେଶକେ ଫାଙ୍କ ଯେଉଁ ଦେଶ ଯାଇ ସେ ଫଳ ଖାଇ । ତମେ ଏମିତି କ'ଣ କହୁଛ ମ ?

ଲୁଲୁ—Oh verry—sory I must explain you.

ପଶୁପତି—ପୁଣି ତ ଆରମ୍ଭ କଲ !

ଲୁଲୁ—No, No, ମୁଁ କ'ଣ କହୁଥିଲି କି, ଆପଣ ଯଦି kindly ଏ ଲଗେଜଟା……

ପଶୁପତି—ମାନେ ??

ଲୁଲୁ – Nothing. I mean in danger and in extreem need, I seek your help, ମାନେ ମାଦାମା ।

ପଶୁପତି—ମାନେ ?

ଲୁଲୁ—କିଛି ମନେ ନ କର ଏଇଟା ନିଅ ( ଜାମାକୁ ଟେକିଦେଲା )

ପଶୁପତି—ଆରେ ତୁମର ଖୁବ୍ ସାହସ ? । ବେତ୍ତଂ ଫୋପାଡ଼ିଦେଲା

ଲୁଲୁ—ଓଃ, ମୋର ଦାମିକା ବେତ୍ତଂ !

ପଶୁପତି— ରଖ ହେ ତମ ଦାମିକା ବତ୍ତଂ ! ଜାଣ ମୁଁ କିଏ ? କୋଉଠୁ ଆଇଚ ହେ ତମେ ? ଦାମିକା ଲୋକଟାକୁ ଦାମି ଦାମି କଥା କହି ଅଦାମିକା କରି ପକେଇଲଣି, କହୁଛ ଦାମିକା ବତ୍ତଂ । ହଇହୋ, ଟଙ୍କା ନାହିଁ, ପଇସା ନାହିଁ, ଜଣା ନାହିଁ, ଶୁଣା ନାହିଁ, ଲୋକର ସାହସ ଦେଖ । ସିଧା ସଳଖ ବତ୍ତଂଟାକୁ ଆଣି ଜାମା ଉପରେ—ମୁଁ କ'ଣ ଖରୁଆ ନା ବୋଝିଆ ! ଏଇ ହାତରେ କେତେ ବୋଝିଆଙ୍କ ମୁଣ୍ଡକୁ ବୋଝ ଉଠେଇଛି, ଶେଷରେ ତମେ ମୋତେ ବୋଝିଆ କରିଦେଲ, ଆରେ !

ଲୁଲୁ – Please excuse me, ମାନେ ଆପଣ ରାଗିଲେ ?

ପଶୁପତି—ରାଗିଗଲି କ'ଣ ହେ, ତମେ ମନେ କରେଇ ଦେଲ ।

ଲୁଲୁ –I mean ମୁଁ ??

ପଶୁପତି— ହଁ, ହଁ, ତମେ । ଆରେ ତମେ କାହାକୁ କଣ କହୁଥାଉଚ ହେ ? ' ଚଢ଼ଉ ଯୋତା, ପାଇଜାମା, ଟୋପି ପିନ୍ଧିଛ ବୋଲି କ'ଣ ତମ ଆଖିକୁ ମଣିଷ ଦେଖାଯାଉନାହାନ୍ତି ? ଆରେ, ତମର ପରି ଲୋକ, ସକାଳୁ ସଞ୍ଜଯାଏ କେତେ ଗୋଡ଼ ତଳେ ଗଡ଼ଗଡ଼ ହଉଛନ୍ତି, ଆଉ ଇଏ ଆସି କହୁଲେ ବତ୍ତଂଟା ଧର ।

ଲୁଲୁ – I will pay for that. I mean ଟଙ୍କା ।

ପଶୁପତି – ଏଁ, ଟଙ୍କା ? ଏତେ ଟଙ୍କା ତମର ଅଛି ? ବୁଝିଲ, ଏଇ ହାତରେ ନିତି ନିତି କେତେ ଟଙ୍କା କାରବାର କରିଛି । ଶହ ଶହ, ହଜାର ହଜାର, ନାଖନାଖ ଏ ହାତ ଗଣିଛି, ଆଉ ଇଏ ଆସି କହୁଲେ ମୁଁ ଟଙ୍କା ଦେବ । ରଖ ହେ ତମର ଟଙ୍କା ! ଆରେ···

ଲୁଲୁ—ଅଚ୍ଛା, I mean please—
ପଶୁପତି—କ'ଣ ସୁଟକେଶ ଧରିବ ???
ଲୁଲୁ—No, No, I don't mean that if you kindly Mr. Pattanaikଙ୍କ ଘରଟା···
ପଶୁପତି—ପଟ୍ଟନାୟକ ଫଟ୍ଟନାୟକ ମୁଁ ଜାଣିନ । ( ଚାଲିଗଲ ) ( ବାଟରେ ରହି ) କୋଉ ପଟ୍ଟନାୟକ କଥା କହୁଚେ ?
ଲୁଲୁ—ମିଃ ଶଶାଙ୍କ ପଟ୍ଟନାୟକ ।
ପଶୁପତି—(ହସି) ମାନେ, ମାନେ, ଆପଣ ଆଜ୍ଞା ! ( ଗୋଡ଼ତଳେ ପଡ଼ିଯାଇଛୁ )
ଲୁଲୁ—ହଁ, ମୁଁ ତାଙ୍କର Private tutor.
ପଶୁପତି—ଆଜ୍ଞା ଆଗରୁ କହୁନାହାନ୍ତି ସେ କଥା, ଆପଣ ସେତେବେଳୁ ଆସିଲେଣି ?
ଲୁଲୁ—No, No, never mind.
ପଶୁପତି—ଏତେ ପାଠ ପଢ଼ିଲେ, ହେଲେ ଆଜ୍ଞା ଏଇ ସରମ ଟିକକ ଗୁଡ଼ିଲେନି । ମୁଁ ପରା ଅଜ୍ଞା ସେଇ କାମରେ ବାହାରିଥିଲି ।
ଲୁଲୁ—I mean ତମେ ?
ପଶୁପତି—ଅଜ୍ଞା ।
ଲୁଲୁ—What ??
ପଶୁପତି—ଡାକନା ପଶୁ ଅଜ୍ଞା ।
ଲୁଲୁ—Oh yes.
ପଶୁପତି—ଆଉ ଡେରି କାହିଁ କରୁଛନ୍ତି ? ଚାଲନ୍ତୁ, ସେ କଥା କହୁଛୁ ଆଜ୍ଞା, ଚେହେରା ଦେଖିଲେ ବଳେ ଜଣାଯିବ । ଚାଲିଚଳନ, କଥାବାର୍ତ୍ତା, ଆହାହା, ତାକୁ ବୁଝିବାକୁ ମୋର ମୁଣ୍ଡ କେତେ ? ଚାଲନ୍ତୁ ।
ଲୁଲୁ—I mean ଏ ସୁଟକେଶଟା······
ପଶୁପତି—ଆଉ ଅଜ୍ଞା, ଏ କଳାବାଲ ଆସି ଧଳା ହେଲାଣି ଏଇ କାମ କରି କରି ପରା ! ଏ ଦ'ଟା କେତେ ଓଜନ ହବ ଯେ···ଟିକିଏ ମୁଣ୍ଡକୁ ଟେକାଦିଅନ୍ତୁ ।

—ଆଲୋକ ଲିଭିଗଲା—

# ପଞ୍ଚମ ଦୃଶ୍ୟ

[ ଶଶାଙ୍କ ପଟ୍ଟନାୟକଙ୍କର ଗୋଟିଏ କୋଠରୀ । ସମୟ ଆସନ୍ନ ସନ୍ଧ୍ୟା; ଗୋଟିଏ ଟେବୁଲ ଏବଂ ଦୁଇଟି ଚେୟାର ପଡ଼ିଥାଏ, କେତେଗୁଡ଼ିଏ ଖାତା ଓ ବହି ମଧ୍ୟ ଟେବୁଲ ଉପରେ ଥାଏ ।

ମାଳା ବସି ଗ୍ରାମଫୋନ ରେକର୍ଡ଼ ବଜାଉଥିଲା । ଗୀତଟି ରାଧାକୃଷ୍ଣ ଭକ୍ତଙ୍କର । "ଝିସିଲା ବୟସେ ଆଉ ଥରେ ଫେରି ଚାଲ ଲୋ, ଖେଳିବା ଲୋ, ଖେଳିବା ଲୋ, ବନାଭଉଁରୀ ।"

ଗୀତଟିରେ ମୁଗ୍ଧ ହୁଏ ମାଳା । ଆଖି ଆଗରେ ନାଚିଯାଏ ଅନେକ କଥା । ବଉଳଗଛ, ଆମ୍ବତୋଟା, ଭାନୁ ଆଉ ସିଏ, କେତେ ସ୍ୱପ୍ନ— କେତେ କଥା··· । ଆତ୍ମହରା ହୁଏ । ଭାବିଚାଲେ ଆକାଶ ପାତାଳ···ରେକର୍ଡଟା ଶେଷ ହୋଇ-ଯାଇଛି, ଖିଆଲ ନାହିଁ ତା'ର । ଏତିକିବେଳେ-ଭାନୁ ଆସେ ମାଳାର ଅଜ୍ଞାତରେ ]

ଭାନୁ— ( ରେକର୍ଡଟା ବନ୍ଦ କରି ମାଳାର ଖୁବ୍ ପାଖକୁ ଆସେ ଏବଂ କାନଧରି ) କୋଉ ସପନପୁରୀ ରାଜକୁମାର ପାଖରେ ଯାଇ ମନଟା ?

ମାଳା— ( ପ୍ରକୃତିସ୍ଥ ହୁଏ; ହଠାତ୍ କହିଉଠେ ) ନା, ସାର୍, କୋଉଠି ନାହିଁ ।

ଭାନୁ— ଆଜି ପଢ଼ାପଢ଼ି ହବ, ନା ଏଇ ରେକର୍ଡ ବଜା ଚାଲିଥିବ ?

( ବସିଲା ଗୋଟାଏ ଚେୟାରରେ )

ମାଳା— ( ବହିପତ୍ର ବାହାର କରେ )

ଭାନୁ— ଖାତା ଦେଖେ ?

ମାଳା—( ପୁଣି ଖାବୁଥାଏ ଓ ଭାନୁକୁ ଦେଖୁଥାଏ )

ଭାନୁ—ସାହିତ୍ୟ ବହି ଏଥର ବାହାର କର ?

ମାଳା—( କବିତା ପ୍ରବେଶ ହଏ )

ଭାନୁ—'ସୀତା ବନବାସ' ସେଦିନ ଆରମ୍ଭ କରିଥିଲି ପରା ! ( ବହି ଦେଖିଲା )

"ଚରଣପଦ୍ମ ତଳୁ ଦୟାସାଗର !
ସତେ କି ଏ ଦାସୀକୁ କଲ ଅନ୍ତର ?
କେମନ୍ତେ କହ ପ୍ରଭୁ ! ବଞ୍ଚିବି ଦିନ
ହରାଇ ସେ ଯୁଗଳ ପଦନଳିନ !
କାହା ଶରଣ କରି ହେ ରଘୁରାଜ
ଜାନକୀ ଅର୍ଦ୍ଧାଙ୍ଗିନୀ ପଶିବ ଆଜ ?
ଭୟେ ଅସ୍ଥିର ଯେବେ ହେବ ହୃଦୟ ?
କିଏ ଅଭୟ ଦେବ ହେ ଦୟାମୟ !"

( ସ୍ୱର୍ଗତଃ ଭକ୍ତକବି ମଧୁସୂଦନ ରାଓଙ୍କର "ସୀତା ବନବାସ" କବିତାରେ··· )

ମାଳା—( ପୂର୍ବାପର ଅନ୍ୟମନସ୍କ ଥିଲା )

ଭାନୁ—ମାଳା ! କ'ଣ ହେଇଛି ତୋ'ର ?

ମାଳା—ମୋର, ନା ତ ସାର୍, କିଛି ହେଇନି ।

ଭାନୁ—ତା' ହେଲେ ?

ମାଳା—( ଦୀର୍ଘଶ୍ୱାସ ନେଇ ) ସାର୍ ! ପୂର୍ବ, ପଶ୍ଚିମ, ଉତ୍ତର ସବୁ ଦିଗରୁ ପବନ ବହେ, ହେଲେ ଏ ଦକ୍ଷିଣା ପବନଟା ଏମିତି କାହିଁକି ଲାଗେ କହିଲେ ?

ଭାନୁ—( ଆଶ୍ଚର୍ଯ୍ୟରେ ) କେମିତି ?

ମାଳା—କେମିତି ଗୋଟାଏ ଲାଗେନି ?

ଭାନୁ—( ନୀରବ )

ମାଳା—ମାନେ ସାର୍, ଗୋଟାଏ···କେମିତି···କେମିତି···ଆପଣ ଜାଣି ନାହାନ୍ତି ସାର୍ !

ଭାନୁ ନା !

ମାଳା – ଯାଃ, ଆପଣ କିଛୁ ଜାଣି ନାହାନ୍ତି । ସେ ପବନ ଲାଗିଲେ ଦେହଟା କେମିତି ଗୋଟାଏ ଶୀତେଇ ଉଠେ, ମନଟା ଉଦାସ ଲାଗେ । ମାନେ କେମିତି ଗୋଟାଏ······ଉଁ, ହଁ, ଗୋଟାଏ ଏକା ଏକା ଲାଗେନ ସାର୍ !

ଭାନୁ—ମାଳା !!

ମାଳା—ସାର୍ !

ଭାନୁ ପାଠପଢ଼ା ଚାହେଁଲେ ଆଜି ଏତିକି ଥାଉ !

ମାଳା· ଆପଣ ରାଗିଲେ ? ହଉ, ଏଥର ଆଉ ବିରକ୍ତ କରିବିନି, ଯାହା ପଚାରିବେ ସବୁ କହିବି !

ଭାନୁ—କାଲି ଭୂଗୋଳ କ'ଣ ପଢ଼ ଇଥିଲି କୁହ !

ମାଳା—କାଲି, କାଲି·········

ଭାନୁ—ମନେ ନାହିଁ ତ ?

ମାଳା—ଅଛି ସାର୍ !

ଭାନୁ—କୁହ ! ( ଭାନୁ ହସି ଆସୁଥାଏ )

ମାଳା—କାଲି, କାଲି, ଭାରତର ମୌସୁମୀବାୟୁ—

ଭାନୁ—ସବୁ ମନେ ରହିଲା ତ ?

ମାଳା—ଉହୁଁ !

ଭାନୁ—କିଛି ???

ମାଳା—ହଁ ସାର୍, ଗୋଟାଏ କଥା···

ଭାନୁ—କ'ଣ ସେଇଟା କହ ?

ମାଳା—ସେଇଟା ହେଉଛି ମୌସୁମୀବାୟୁ ଭିତରେ ସବୁଠୁ ଇମ୍ପୋଟାଣ୍ଟ, ସାର୍ । ହଁ ସାର୍, ସେ ମୌସୁମୀରେ ବର୍ଷା ହୁଏନି !

ଭାନୁ—ବର୍ଷା ହୁଏନି ? ? ?

ମାଳା—ହଁ ସାର୍, ମୋଟେ ବର୍ଷା ହୁଏନି । ଆପଣଙ୍କ ମନେ ନାହିଁ, ସେ ମୌସୁମୀ ବହିଲେ ପଳାଶର ଗଛର ଶାଖାରେ ଶାଖାରେ ହସିଉଠେ ସବୁଜ ପତ୍ର, କୃଷ୍ଣଚୂଡ଼ାର ଶାଖାରେ ଜାଗିଉଠେ ଫଗୁଉତ୍ସବ ।

ଭାନୁ—ମାଳା !!!

ମାଳା—ଆପଣ କ'ଣ କେବେ ଶୁଣି ନାହାନ୍ତି, ସେ ମୌସୁମୀର ଡାକରେ କୋଇଲି କେମିତି ଡାକେ କୁ, କୁ...

ଖନୁ—ମାଳା...!!!

ମାଳା—ହେଲେ ସେ ପବନ ଜୀବନରେ ଥରେ ଆସେ ସାର୍...ଆଉ ଫେରେନା।
( ମାଳା ଉଠିଗଲା ଝରକା ପାଖକୁ ଓ ମୁହଁଟା ବୁଲାଇ ନିଏ )

ଖନୁ—( କିଛି ସମୟ ଭାବିଲା । ମାଳା ପାଖକୁ ଯାଏ ) ମାଳା !!!
ମାଳା— କାନ୍ଦଉଠେ ।

ଖନୁ—ମାଳା, ସେ ପବନରେ କେତେ ବଉଳଫୁଲ ଫୁଟି ଧୂଳିରେ ଝରିଯାଏ... ଜାଣିଛୁ !

ଜଗା—( ଭିତରୁ ) ଜାଣିନି ମୁଁ ଆଜ୍ଞା !
( ପଶି ଆସୁ ଆସୁ ଜିଭ କାମୁଡ଼ି ଠିଆ ହୋଇଯାଏ )

ଖନୁ—କ'ଣ କରେ ଜଗା ?

ଜଗା—ଆମ ଗୁମାସ୍ତାବାବୁ, ସାଙ୍ଗରେ ଗୋଟାଏ କାହାକୁ ଧରିଆଣିଛନ୍ତି ଯେ, ସେ କୁଆଡ଼େ ଏଥର ଦେଈଙ୍କି ପଢ଼େଇବେ ? ଆପଣ ତ ପଢ଼ଉଛନ୍ତି, ଆଉ ସେ'ଟା କ'ଣ ପଢ଼େଇବ...

ମାଳା—ଜଗା !

ଜଗା—ହଁ ଦେଈ, ସେଇଟା କ'ଣ ପଢ଼େଇବ ? ତା ବେଶ ପୋଷାକ...ଛି, ଛି, ତେଣିକି ତା କଥା କ'ଣ ବୁଝି ହଉଛି । ଖାଲି ଠୋ ଠା, ଫୁସ ଫାସ୍ କରି କହୁଛି ।

ମାଳା—ହଉ ତୁ ଥା । ମୁଁ ଟିକିଏ ଆସୁଛି ସାର୍ ! ( ଚାଲିଗଲା ଭିତରକୁ )

ଖନୁ—ଜଗା !
ଜଗା—ଆଜ୍ଞା !
ଖନୁ—ଦେଈଙ୍କି ପଢ଼େଇବାକୁ ତାହେଲେ ସେ ଆସିଛନ୍ତି ?

ଜଗା – ଗୁମାସ୍ତା ପର୍ଭ କହୁଛନ୍ତି ବାବୁ କୁଆଡ଼େ ତାଙ୍କୁ ପଠେଇଛନ୍ତି ! ଏଇଠି ବାଣ୍ଡ ଘରେ ସେ ରହିବେ ଆଉ ଦେଈଙ୍କି ପଢ଼େଇବେ ।

ଖାନୁ—ହଉ, ତୁ ଯା ।

ଜଗା -( ଭିତରକୁ ଚାଲିଗଲା

ଖାନୁ—( ନୀରବରେ ବସିଲା କିଛି ସମୟ, ତା ପରେ ଉଠି ଚାଲିଗଲା )

ମାଳା—( ଭିତରୁ ଆସି ଦେଖିଲା ଖାନୁ ନାହିଁ ) ଜଗା ! ଜଗା !

ଜଗା—ଦେଈ ! ( ଆସିଲା ଭିତରୁ )

ମାଳା—ସାର୍ କୁଆଡ଼େ ଗଲେ ?

ଜଗା—ମୁଁ ତ ଜାଣିନି ଦେଈ, ମତେ ନୂଆ ମାଷ୍ଟରଙ୍କ କଥା ପଚାରିଲେ ଆଉ କହିଲେ ଯା !

ମାଳା—( ନୀରବ )

ଜଗା—ଡାକି ଆଣିବି ଦେଈ ?

ମାଳା—ନା, ସେ ଆଉ ଫେରିବେନି !

—ଲାଇଟ ଲିଭିଗଲା—

## ଷଷ୍ଠ ଦୃଶ୍ୟ

[ ଶଶାଙ୍କ ବାବୁଙ୍କ ଅଳିନ୍ଦ—ସକାଳ —ବିଛଣାରୁ ଉଠି ଆସୁଥିଲେ ଲୁଲୁ ବାଣ୍ଡୀଡ଼ ]

ଲୁଲୁ—ଫେରିବେ ନି ? Who says so. ଆଇ ଉଇଲ ବି କମ୍ ପେଲଡ ଟୁ ଗେଟ୍ ବ୍ୟାକ୍, ଇଟିଜ ଗୋଇଙ୍ଗ ଟୁ ବି ସେଭେନ ଥାଟି । Still no courtesy. Mill owner like Mr. Pattnaik ଙ୍କ ଘରେ । No, no, impossible, quite impossible. If it would have been Newyorkionimy sweet dream. My dearest, My lovely !

ଜଗା — ଅଜ୍ଞା······ ହାତରେ ଜଳଖିଆ ଥିଲା )

ଲୁଲୁ—What ? Oh I am sorry···you I mean you···

ଜଗା—ହଁ ଆଜ୍ଞା, ଜଳଖିଆ ନେଇ ଆସିଛି ।

ଲୁଲୁ—What you mean ? You mean tiffin. ହେଲେ କେତେଥର କହିବ ମୁଁ ଦାନ୍ତ ଘଷିନି···

ଜଗା ଅଜ୍ଞା ପାଣି ତ ଦେଇଛି, ଘଷୁ ନାହାନ୍ତି ! କିଏ ମନା କରୁଛି ?

ଲୁଲୁ—Hopeless ! fool. କେମିତି କରିବି ? How can I do ? Newyorkରେ କ'ଣ ଏମିତି କେହି କରେ ?

ଜଗା—କ'ଣ କରେ ଆଜ୍ଞା ?

ଲୁଲୁ ଏଇ Bed tea ନ ଖାଇ ଦାନ୍ତ ଘଷିବା, I mean ଆଉ tifbin ଖାଇବା । No no, nowhere. I can say never in Newyork, impossible, quite impossible.

ଜଗା ଅଜ୍ଞା, କଣ ଯେ କହୁଛନ୍ତି କିଛି ବୁଝି ହେଉନି ।

ଲୁଲୁ- ତୁ ବୁଝି ପାରିବୁ ନାହିଁ । I know you can't.

ଜଗା—ଦେଈ ପରା ସେଆଡ଼େ ବହି ନେଇ ପଢ଼ିବାକୁ ଆସିଲେଣି !

ଲୁଲୁ—ଦେଈ ? You, you mean Miss Pattnaik ପଢ଼ିବାକୁ ଆସିଲେଣି । So soon ? ଆହା ! ତାଙ୍କର ପୁଣି Bed tea ଖାଇବା ଦରକାର । ସେ କ'ଣ ଆଜି Bed tea ଖାଇ ନାହାନ୍ତି ?

ଜଗା—ବେଡ଼ି ଫେଡ଼ି ଅଜ୍ଞା ସେ କିଛି ଖାନ୍ତି ନାହିଁ । ଜଳଖିଆ ଖାଆନ୍ତି, ଭାତ ଖାଆନ୍ତି; ଦୁଧ ଖାଆନ୍ତି ।

ଲୁଲୁ—What ! Miss Pattnaik bed tea ଖାଆନ୍ତି ନାହିଁ ? What hell ! Bed tea ନ ଖାଇଲେ ସେ ମଣିଷ ବଞ୍ଚି ପାରିବ ନାହିଁ । How can one go without in ?

ଜଗା—ମୁଁ କିଛି ଜାଣି ନ ଆଜ୍ଞା, କ'ଣ ଏଣ୍ଣୁ ତେଣୁ କହୁଛନ୍ତି । ମୁଁ ଯାଉଚି ଆଜ୍ଞା, ଗୁମାସ୍ତା ବାବୁଙ୍କୁ ଡାକିଦେବି । ( ମାଳୀର ପ୍ରବେଶ )

ମାଳା—ଗୁମାସ୍ତା ବାବୁଙ୍କୁ ଡାକିବାକୁ ପଠାଇବନ ।

ଲୁଲୁ—Hallow Miss Pattnaik ! Good morning. I mean ଆପଣ bed tea ନ ଖାଇ···

ମାଳା—Bed tea ?

ଲୁଲୁ—Yes, ଜଗା told me; I mean ହଁ—ଏ ଜଗା କହୁଥିଲା ଯେ, ଆପଣ bed tea ନ ଖାଇ ଆଜି ପଢ଼ିବାକୁ ବାହାର ଆସିଛନ୍ତି ।

ମାଳା—ସେ ସବୁ ମୋର ଚଳେନା । ଯା ହେଉ, ଆପଣଙ୍କଠାରୁ ଗୋଟାଏ ନୂଆ କଥା ଶୁଣିବାକୁ ମିଳିଲା ।

ଲୁଲୁ—ନୂଆ କଥା ନୁହେଁ Miss Pattnaik - ମାନେ Newyork ରେ ଏଟା ଗୋଟାଏ Daily routine. Life start at day break with a sweet cup of bed tea.

ମାଳା—କିନ୍ତୁ ଏଇଟା Newyork ନୁହେଁ ଲୁଲୁ ବାବୁ !

ଲୁଲୁ—No, no, not ବାବୁ । I mean Mr. Lulu Barnad.

ମାଳା—Barnad ? ବାଃ ଚମତ୍କାର ।

ଲୁଲୁ—Yes, really excellent, very sweet. I mean ଆପଣ ଏକା ନୁହନ୍ତି Miss Pattnaik. To be very frank; ଅନେକ ମୋର ଏ ନାଁ ଟାକୁ ପସନ୍ଦ କରନ୍ତି, congratulation ଜଣାନ୍ତି ।

ମାଳା—ସତେ ? ହଁ ଲୁଲୁ ତ ବୁଝିଲି, କିନ୍ତୁ ବାର୍ଣ୍ଣାଡ଼ ?

ଲୁଲୁ—ସେଇଆ ପଚାରନ୍ତି Miss Pattnaik. Yes yes, you are right. Reall ଆପଣଙ୍କପରି ଅନେକ ଏଇଟାକୁ ବୁଝି ପାରନ୍ତି ନାହିଁ । ଅନେକ ମୋତେ ଏଇଆ ପଚାରନ୍ତି । ସମସ୍ତେ ମୋ ନାଁ ଟାକୁ ବୁଝିପାରନ୍ତି ନାହିଁ । କିନ୍ତୁ ଏ ନାଁ ଟା ତ ମୁଁ ନିଜେ ଦେଇଛି ।

ମାଳା—ନିଜେ ?

ଲୁଲୁ—ହଁ, yes, I myself.

ମାଳା—କାହିଁକି ?

ଲୁଲୁ—କାହିଁକି ବୁଝିପାରିଲେ ନାହିଁ Miss Pattnaik ? My sweet, lovely, Newyork ରେ ଯାଇ ପହଞ୍ଚିଲି ପରେ ଦେଖେ ଖାଲି Tom, Hennery, Charles, Dickey, Thomas, Philip. Really ତା ଭିତରେ ଏଇ Little—I mean ଗୁଡ଼ିଏ ଗ୍ରେଟ ଲୁଲୁ ନାଁଟା ବଡ଼ insignificant ହୋଇପଡ଼ିଲା । ତେଣୁ ବାଧ୍ୟ ହୋଇ ଅନେକ ଭାବିଚିନ୍ତି, ପଛରେ ଗୋଟିଏ Barnad ଲଗେଇ ଦେଲି । ଅବଶ୍ୟ ସେ ନାଁରେ ମୋତେ କେହି ଡାକିଲେ ନାହିଁ । ତଥାପି ମୁଁ ନିଜେ ସେ ନାଁଟାକୁ କୁହେ । କହିଲାବେଳେ ଟିକିଏ ବଡ଼ ପାଟି କରି କୁହେ, ଆଉ ଲେଖିଲାବେଳେ ଟିକିଏ ବଡ଼ ଅକ୍ଷରରେ ଲେଖେ I mean capital letter ରେ ଲେଖେ—LULU BARNAD.

ମାଳା—ଚମତ୍କାର ! Newyork ରେ ତ ଆପଣଙ୍କୁ ଦେଖିବାକୁ ବହୁତ ଲୋକ ଆସୁଥିବେ ମନେହୁଏ ।

ଲୁଲୁ—You are right Miss Pattnaik, right you are—ମୁଁ ବାଟରେ ଯାଉଥିଲାବେଳେ ଲୋକେ ମତେ ଦେଖିବା ଲାଗି ରାସ୍ତାରେ ଭିଡ଼ କରୁଥିଲେ । There was whispering and crowds. Really ମୁଁ କଥା କହିଲାବେଳେ ଲୋକେ ହସି ହସି ଗଡ଼ିଯାଉଥିଲେ । To be very frank they were brusting into laughs, I mean କେହି କେହି ହସି ହସି collapse ବି କରି ଯାଉଥିଲେ ।

ମାଳା—ଏଁ ?

ଲୁଲୁ—ଆହୁରି ଶୁଣନ୍ତୁ, ମୁଁ ବଲ୍‌ଡ୍ୟାନ୍‌ସ କଲାବେଳେ···

ମାଳା ଏଁ, ଆପଣ, ବଲ୍‌ଡ୍ୟାନ୍‌ସ କରୁଥିଲେ ?

ଲୁଲୁ—Oh' sure, ( ବଲ୍‌ଡ୍ୟାନ୍‌ସର ନମୁନା ଦେଖାଇ ) ମୁଁ ବଲ୍‌ଡ୍ୟାନ୍‌ସ କଲାବେଳେ ମତେ ପାର୍ଟନର ମିଳୁ ନ ଥିଲେ । I mean ଗୋଟି ଗୋଟି କରି ସେ କ୍ଳବ ଛାଡ଼ି ଚାଲିଯାଉଥିଲେ । ଅଳ୍ପ ଦୂରରେ ଠିଆ ହୋଇ

ମତେ ନାଚବାର ଦେଖିଥିଲେ । ସେମାନଙ୍କ ଆଗରେ ଘଣ୍ଟା ଘଣ୍ଟା ଧରି ମୁଁ ନାଚୁଥିଲି ମିସ୍ ପଟ୍ଟନାୟକ ! I mean for hours ଆଉ ଘଣ୍ଟା ଘଣ୍ଟା ଧରି ।

ମାଳା—ହଁ, ଆଉ ଏମିତି ଘଣ୍ଟା ଘଣ୍ଟା ଅବାନ୍ତର ଗପି ଯାଉଥିଲେ; ଏଇଆ ନା ?

ଲୁଲୁ—Yes, yes Miss Pattnaik.

ମାଳା—ଆଚ୍ଛା, ଆପଣ ନିଉୟର୍କରେ କେତେଦିନ ଥିଲେ ?

ଲୁଲୁ—ଅନେକ ଦିନ, ହେଲେ ବେଶୀ ଦିନ ନୁହେଁ, ବଡ଼ ଦୁଃଖର ସହିତ ମତେ ସେଠାରୁ ଆସିବାକୁ ପଡ଼ିଲା ମିସ୍ ପଟ୍ଟନାୟକ, ମାନେ they compelled me - ମତେ ବାଧ୍ୟ ହୋଇ ଦେଶକୁ ଫେରି ଆସିବାକୁ ପଡ଼ିଲା ।

ମାଳା— କାହିଁକି ?

ଲୁଲୁ—ସେ କଥା ମତେ ପଚାରନ୍ତୁ ନାହିଁ ମିସ୍ ପଟ୍ଟନାୟକ, ସେମାନେ ମତେ ପାଗଳ ବୋଲି ସନ୍ଦେହ କଲେ । ଅଚ୍ଛା କୁହନ୍ତୁ ତ do you think I am mad.

ମାଳା—ନା, ନା, ସେ କଥା କିଏ କହିଲା ?

ଲୁଲୁ—ଠିକ୍ କହୁଛନ୍ତି, you are right. ସେଠାରୁ ସେମାନେ ମୋତେ ପଠାଇ ଦେଇ ବଡ଼ ଅନ୍ୟାୟ କରିଛନ୍ତି । I think they have done a great blunder, କଣ ଭାବୁଛନ୍ତି ?

ମାଳା—ହଁ, ମୁଁ ବି ତ ସେଇଆ ଭାବୁଛି । ନିଉୟର୍କରେ ଗୋଟାଏ ପୃଥିବୀ ବିଖ୍ୟାତ ପାଗଳଖାନା ଅଛି ବୋଲି ଶୁଣିଥିଲି । ସେଠି କି ଆପଣଙ୍କ ପାଇଁ ସ୍ଥାନ ମିଳିଲା ନାହିଁ ?

ଲୁଲୁ—Yes, you are right Miss Pattnaik ( ବୁଝିପାରି ) I mean ପାଗଳଖାନାରେ—What ? ଏଁ, କଣ କହିଲେ ମିସ୍ ପଟ୍ଟନାୟକ ?

ମାଳା—ସମୟ କେତେ ହେଲାଣି ଜାଣନ୍ତି ?

ଲୁଲୁ—Oh, you mean time ? Oh yes (ଘଣ୍ଟାଦେଖି ସାଢ଼େ ଆଠଟା

ମାଳା—ବାଉଣ୍ଡର୍କରେ ସମୟ ଜ୍ଞାନଟା ନଷ୍ଟ ଥାଏ ବୋଧହୁଏ ?

ଲୁଲୁ ନଷ୍ଟାସ୍ତୁ, ନଷ୍ଟାସ୍ତୁ, Oh I am sorry. ନଷ୍ଟ ଥାଏ, ହେଲେ ଆଜ ସବୁ ଗୋଳମାଳ ହେଇଯାଇଛି, simply for a cup of bed tea, ଖାଲି କପେ ବେଡ୍ ଟି'ର ଅଭାବରୁ ।

ମାଳା ଦେଖନ୍ତୁ, ବେଡ୍ ଟି'ର ମୋହଟା ଆପଣଙ୍କୁ ଛାଡ଼ିବାକୁ ପଡ଼ିବ ।

ଲୁଲୁ—ଏଁ, ଛାଡ଼ିବାକୁ ପଡ଼ିବ ???

ମାଳା—ହଁ, ହଁ, ସବୁଦିନ ପାଇଁ···

ଲୁଲୁ—ଏଁ, for ever.

ମାଳା—Yes, for ever.

ଲୁଲୁ—ନା, ନା, ସେକଥା କୁହନ୍ତୁ ନାହିଁ ମିସ୍ ପଟ୍ଟନାୟକ, ତା ମୁଁ ପାରିବିନି ।

ମାଳା—ତାହେଲେ ଗୁଣ୍ଡାଙ୍କର ମୋହଟା ଛାଡ଼ିବାକୁ ପଡ଼ିବ, ବୁଝିଲେ ? (ଚାଲିଗଲା)

ଲୁଲୁ—Yes, yes I do understand, ନାହିଁ ନାହିଁ ମୁଁ କିଛି ବୁଝିପାରିଲିନି ମିସ୍ ପଟ୍ଟନାୟକ !

(ଜଗା ଟ୍ରେ ଓ କପ୍ ପ୍ଲେଟ ନେଇ ଆସିଲା)

ଜଗା—ଏଇ ନେଇ ଆସିଛି, ଆଜ୍ଞା !

ଲୁଲୁ—Many thanks, many thanks. (ହଠାତ୍ କେଟ୍‌ଲିକୁ ନେଇ) Oh my life···

ଜଗା—ଗରମ ହେଇଛି, ରୁହନ୍ତୁ, କପ୍‌ରେ ଦଉଛି ।

ଲୁଲୁ—No need, no need ( କେଟ୍‌ଲି ଛଡ଼େଇ ଆଣିଲା )

—ଲାଇଟ୍ ଆସ୍ତେ ଆସ୍ତେ ଲିଭିଗଲା—

## ସପ୍ତମ ଦୃଶ୍ୟ

[ ବଉଳ ଗଛ, ଜହ୍ନପକ୍ଷ ରାତି । ଦୂରରେ ଗୀତ ଶୁଭୁଛି, ଭାନୁ ଆସିଛି ମାଳାର ଅପେକ୍ଷାରେ ]

ଭାନୁ—( ଆସିଛି, ଚାରିଆଡ଼େ ମାଳାକୁ ଚାହିଁଛି, ଏହି ସମୟରେ ଗଛରୁ ବଉଳ ଫୁଲଟି ଝରିଛି । ତାପରେ କିଛି ସମୟ ଅପେକ୍ଷା କରି ଫେରିଯାଉଛି । )

ମାଳା—( ତାପରେ ପୁଣି ଆସିଛି, ଯିବାକୁ ଉଦ୍ୟମ କଲାବେଳକୁ ଦେଖାଗଲା ଭାନୁ )

ଭାନୁ—ମାଳା !

ମାଳା—( ଫେରି ଚାହିଁଛି ) ଭାନୁ ! ( ପାଖକୁ ଦୌଡ଼ି ଆସିଛି )

ଭାନୁ—ଏତେ ରାତିରେ ?

ମାଳା—ଏତେ ରାତିରେ ତମେ ଏଠି ?

ଭାନୁ—ଆଉ ତୁ ?

ମାଳା—ମୁଁ ?

ଭାନୁ—ହଁ ।

ମାଳା—ଅତୀତର ହସ କାନ୍ଦ ଧୂଳି ଖେଳ ସବୁ ଏଇଠି । ଏଇ ବଉଳ ଗଛକୁ ଭୁଲିପାରିଲି ନାହିଁ ଭାନୁ !

ଭାନୁ  ମାଳା ?

ମାଳା— ତମର ମନେ ନାହିଁ ଭାନୁ ! ମୋ ଜନ୍ମଦିନରେ ତମେ ତୋଳି ଦେଇଥିଲ ଏଇ ଝଡ଼ା ବଉଳର ମାଳାଟିଏ । ସେଦିନ ମୁଁ କଣ କହିଥିଲି ମନେ ନାହିଁ ? ସତରେ ଭାନୁ ! ସବୁଠୁ ଦାମିକା ହୋଇଥିଲା ତମର ସେଇ ଝଡ଼ା ବଉଳର ମାଳା ।

ଭାନୁ  ଫୁଲ ମଉଳିଯାଏ ମାଳା !

ମାଳା— ହେଲେ ମନ ତ ମଉଳି ଯାଏନା ଭାନୁ !

ଭାନୁ—ନା, ନା, ମାଳା ! ସେଠି ଆଜ ମୋର ପ୍ରୟୋଜନ ସରିଯାଇଚି ।

ମାଳା—ହେଲେ ମୋ ପାଖରେ ତମର ପ୍ରୟୋଜନ ସରି ନାହିଁ, କି କେବେ ହେଲେ ସରିବ ନାହିଁ ।

ଭାନୁ—ଭୁଲ୍ କହୁଚ ମାଳା ! ତୁ ଭୁଲିଯାଉଚ୍ଚ, ମୁଁ ସେ ଘରର କେହି ନୁହେଁ । ମୁଁ ଜଣେ ସାମାନ୍ୟ ଦରମାଖିଆ ଟିଉସନ ମାଷ୍ଟର । ସାମାନ୍ୟ କେତୋଟି ଟଙ୍କା ବିନିମୟରେ ମୁଁ କେବଳ ପାଇଥିଲି ଜଣେ ଛାତ୍ରୀକୁ ପଢ଼ାଇବାର ଅଧିକାର ।

ମାଳା—ନା ଭାନୁ ! ତମେ ତାଠାରୁ ଅନେକ ବେଶୀ, ମୋ ପାଖରେ ତମେ ଖାଲି ଟ୍ୟୁସନ ମାଷ୍ଟର ନୁହଁ ।

ଭାନୁ—ମାଳା ! ପଥର କାଙ୍ଗାଳ ହୁଏତ ରାଜମହଲର ସ୍ୱପ୍ନ ଦେଖି ପାରେ; କିନ୍ତୁ ବାସ୍ତବରେ ତାକୁ ଛୁଇଁ ପାରିବାର ସ୍ପର୍ଦ୍ଧା । ଯଦି ତା ମନରେ କେବେ ସ୍ଥାନ ପାଏ, ତେବେ, ଦୁନିଆଁ ଲୋକେ ତାକୁ ପାଗଳ ବୋଲି କହିବେ ମାଳା··· ପାଗଳ ବୋଲି କହିବେ ।

ମାଳା—ସତରେ, ତୁମେ ଯଦି ଦୁନିଆ ଲୋକଙ୍କ ଆଖିରେ ପାଗଳ ହୁଅ, ତାହାହେଲେ ମୁଁ ବି ତୁମ ପାଇଁ ପାଗଳୀ ହେବି ଭାନୁ ! ହେଲେ ସତ କହୁଚି, ତୁମକୁ ଛାଡ଼ି ମୁଁ ବଞ୍ଚି ପାରିବିନି ।

ଭାନୁ—ବଡ଼ଲୋକ ଘରର ଅଲିଅଳୀ ଝିଅ । ନିଃସ୍ୱ କାଙ୍ଗାଳ ଆଗରେ ତୁମେ ହାତ ପାତି ଛିଡ଼ାହେବ ! ନା ନା, ମୁଁ ଏହା ଦେଖି ପାରିବିନି । ତମେ ତା ସହି ପାରିବନି ।

ମାଳା—ଏ ମୋର ସହିବା ନୁହେଁ ଭାନୁ ! ତମେ ମତେ ଆଶୀର୍ବାଦ କର, ଏ ହେଉ ମୋର ତପସ୍ୟା···ଠିକ୍ ଶିବଙ୍କୁ ପାଇବା ପାଇଁ ଗୌରୀର ତପସ୍ୟା ପରି ।

ଭାନୁ—ନା ମାଳା ! ତୁ ଭୁଲିଯା ମାଳା ! ଘରକୁ ଫେରିଯାଅ, ଏଇ ରାତିରେ ତତେ ଯଦି କିଏ ଏଇଠି ଦେଖେ···

ମାଳା—ହଁ, କହିବ ମାଳା କଳଙ୍କିନୀ···କୁଳ ମାନ ଗୌରବ ପାଦରେ ଦଳି ନିଶୂନ ରାତି ଅଧରେ ସେ ପାଗଳୀ ପରି ଦୌଡ଼ିଥିଲି, ତା'ର ଅତୀତର ମୂକସାକ୍ଷୀ

ସେଇ ଝଁଗ୍ ବଉଳ ତଳାକୁ...ପର ପୁରୁଷ ଭାନୁ ପାଦ ତଳେ ନିଜକୁ ନେଃଟେଇ ଦେବାପାଇଁ ! ଏଇଆ ନା ?

ଭାନୁ—ହଁ ମାଳା !

ମାଳା—ସବୁ ଅପବାଦ ମଥା ପାତି ସହିବାକୁ ଉଳେ ଦେଲେ ଦ୍ୱିଧା କରିବ ନାହିଁ ଭାନୁ ! ଖାଲି ତମେ ଯଦି ମତେ ଦୂରକୁ ଠେଲି ନ ଦିଅ । ମୁଁ ସବୁ ପାରିବ ଭାନୁ...ମୁଁ ସବୁ ପାରିବ ।

ଭାନୁ—ମାଳା !

ମାଳା—ଆଉ ତମେ ଯଦି ମତେ ଗ୍ରହଣ ନ କର, ତାହାହେଲେ ମୋର ସବୁ କଳଙ୍କ ଧୋଇବା ପାଇଁ ଏଇ ଭର୍ଗନଦୀର ଅଥଳ ଗର୍ଭରରେ କ'ଣ ଯଥେଷ୍ଟ ଜଳ ନାହିଁ ଭାନୁ ?

ଭାନୁ—ମାଳା ! ( କୋଳେଇ ନେଲା )

ମାଳା—ଭାନୁ ! ମୁଁ ଜାଣେ ଭାନୁ, ମତେ ଛାଡ଼ି ତମେ ଦୂରକୁ ଚାଲିଯିବାପାଇଁ ବସିଛ ।

ଭାନୁ—ଦୂରକୁ ?

ମାଳା—ମତେ ତମେ ଲୁଚଉଚ । ମୁଁ ସବୁ ଖବର ରଖିଛି, ତମେ ବିଦେଶରେ ଚାକିରି ପାଇଚ, ଏଇଆ ନା ?

ଭାନୁ—ହଁ ମାଳ ! ଆଉ ସେଇଥିଯୋଗୁ ମୁଁ ଶେଷଥର ପାଇଁ ଆସିଥିଲି ଏଇ ମଉଳା ସ୍ମୃତିର ସମାଧି ତଳକୁ...ଝଁଗ୍ ବଉଳ ତଳକୁ । କିନ୍ତୁ ଏଠି କେତେ ଫୁଲ ଝରି ମଉଳିଯାଏ । ଆଉ ତା ସାଙ୍ଗରେ ମଉଳି ଯାଇଛି ମୋ ଜୀବନର ସବୁ ସ୍ୱପ୍ନ, ସବୁ କାମନା । ସବୁ ଆଶା ମୋର ଧୂଳିରେ ଲୋଟିଯାଇଛି ଠିକ୍ ପାହାନ୍ତାର ଝଁଗ୍ ବଉଳ ପରି ।

ମାଳା—ଏ ଭୂଇଁ ଛାଡ଼ି ତମେ ଚାଲିଯିବ ?

ଭାନୁ—ହଁ ମାଳା ! ଆଖିରୁ ଲୁହ ଝରାଇ ମୁଁ ଆଉ ଏଠି ବଞ୍ଚି ପାରିବନି । ଦୂରକୁ ଯାଇଁ ଦେଖିବ, ମାଳା ମୋର ନୂଆ ଘର କରିଚ, ସୁଖୀ ହୋଇଚ ।

ମାଳା—ତମେ ଏକଥା ଖାଵ ପାଚ୍ଚୁଚ ଭାନୁ ? ମାଳା ନବେଦ୍ଧା । ମେ ମଉଳି ଯିବ, ଶୁଖିଯିବ, ଧୂଳରେ ଝଡ଼ିଯିବ, ହେଲେ ଆଉ କାହା ଗଳାର ମାଳା ମେ ହେଇ ପାରିବନି ଭାନୁ ।

ଭାନୁ --ମାଳା !

ମାଳା—ତମେ ମୋତେ ଦୂରେଇ ଦଅନା ! ତମେ ଯୁଆଡ଼େ ଯିବ, ମୁଁ ତମର ହାତ ଧରି ଆଗେଇଯିବି । ମତେ ମନା କରନି ଭାନୁ···ମତେ ମନା କରନି । ( ଏହି ସମୟରେ ଗୋଟିଏ ପଟରୁ ପ୍ରବେଶ କଲେ ଲୁଲୁ ବାର୍ଣ୍ଣୀଡ଼ । ଏମାନଙ୍କୁ ଦେଖି ଲୁଚିଗଲେ )

— ଲାଇଟ୍ ଲିଭିଗଲା —

## ଅଷ୍ଟମ ଦୃଶ୍ୟ

[ ଶଶାଙ୍କ ପଟ୍ଟନାୟକଙ୍କ ଅଫିସ । ସମୟ— ଦିନ ]

ଶଶାଙ୍କ –Stop ! stop, I say କିଏ ତୁମେ ଏ ଘରେ କିଏ ?

ଲୁଲୁ—ଜାଣେ ସାର୍ ! ଆଇ ମିନ୍ ମାଇଁ ଡେଜିଗନେସନ୍···

ଶଶାଙ୍କ – କଣ ଜାଣ ? କଣ ଜାଣ ତୁମେ ? What do you know ?

ଲୁଲୁ – Private tutor.

ଶଶାଙ୍କ – ଦରମା କେତେ ?

ଲୁଲୁ—Rupees one hundred only Sir.

ଶଶା ଙ୍କ ଅଥଚ,ତମେ ଏ କଥା କହିବାକୁ ସାହସ କଲ ?

ଲୁଲୁ -I mean, no Sir.

ଶଶାଙ୍କ—No Sir, what do you mean ?

ଲୁଲୁ ନାଇଁ, ସାହାସ କରନି ସାର୍ ! ଯାହା ଦେଖିଛି eye-witness.

ଶଶାଙ୍କ—କଣ ଦେଖିଛ ?

ଲୁଲୁ – ଥରେ ତ କହିଲି I mean once I told you Sir.
ଶଶାଙ୍କ – All right. ଏ କଥାର କିଛି ପ୍ରମାଣ ତମେ ଦେଇ ପାରିବ ? I mean, can you Justify your statement.

ଲୁଲୁ – ପ୍ରମାଣ, Justification ? Impossible Sir, quite impossible.

ଶଶାଙ୍କ – ତା'ର ମାନେ ?

ଲୁଲୁ – ତା'ର ମାନେ ଏ ସବୁ Private arrair Sir. ଏଥିରେ ପୁଣି justification, ଖାଲି Horrible ନୁହେଁ ସାର୍, Terrible.

ଶଶାଙ୍କ – ତାହା ହେଲେ ତୁମ କଥାର ସତ୍ୟତା ?

ଲୁଲୁ – ସେଇଟା ଆପଣ verify କରି ପାରନ୍ତି ସାର୍ ! I mean ଗାଁ ଲୋକଙ୍କୁ ପଚାରି ପାରନ୍ତି ସାର୍ !

ଶଶାଙ୍କ—( ବିରକ୍ତ ହୋଇ ) What ! ଗାଁ ଲୋକଙ୍କୁ ପଚାରିବ ?
ଲୁଲୁ—ହଁ ସାର୍ ! ଗାଁ ସାରା ସମସ୍ତେ scandalise କରୁଛନ୍ତି ।
ଶଶାଙ୍କ—ଗାଁ ସାରା scandalise କରୁଛନ୍ତି ?
ଲୁଲୁ—Oh sure Sir. କେହି କେହି I mern Sir ସେମାନଙ୍କ ଭିତରୁ ଦେଖିଚନ୍ତି···ମାନେ eye witness.

ଶଶାଙ୍କ—Eye-witness. ଗାଁ ଲୋକେ ଏ କଥା ଜାଣନ୍ତି ? ଆଉ ତମେ ଏଠି residential tutor ହୋଇ କଣ କରୁଥିଲ ? ଭିତରେ ଶୋଇ ଘୁଙ୍ଗୁଡ଼ି ମାରୁଥିଲ ?

ଲୁଲୁ – ହଁ ସାର୍ ! ବାଧ୍ୟ ହୋଇ ମତେ ଘୁଙ୍ଗୁଡ଼ି ମାରିବାକୁ ପଡ଼ୁଥିଲା ।
ଶଶାଙ୍କ – ମାନେ ?

ଲୁଲୁ – ମୋ ଘ'ରେ ସବୁଦିନେ Bromide ଦିଆ ଯାଉଥିଲା ସାର୍ ! ଭୀଷଣ ଷଡ଼ଯନ୍ତ୍ର । କନସ୍ପ୍ରେସି ସାର୍ !
ଶଶାଙ୍କ – B omide ? ଷଡଯନ୍ତ୍ର ? କଣ ତମେ କହୁଚ ?

ଲୁଲୁ—ମିସ ପଟ୍ଟନାୟକ ଆଉ ଆପଣଙ୍କ Previous private tutor ଦୁହେଁ ମିଶି ଷଡ଼ଯନ୍ତ୍ର କରି ମୋ ଗୃ'ରେ Bromide ମିଶାଇ ଦେଉଥିଲେ ସାର୍ ! Strong bromide Sir.

ଶଶାଙ୍କ ଆଉ ତୁମେ ତାକୁ ପିଇ ଆରାମରେ ଘୁଙ୍ଗୁଡ଼ି ମାରୁଥିଲ ? ସାବାସ୍......

ଲୁଲୁ—ଜାଣି ନ ଥିଲି ସାର୍ ! ଗୃ ଖାଇ ବେଶ୍ ନିଦ ହୋଇ ଯାଉଥିଲି । ପରେ ଯେତେବେଳେ ଜାଣିଲି, ସେତେବେଳେ କଥାଟା ବହୁଦୂର Progress କରି ଯାଇଛି, I mean ଆଗେଇ ଯାଇଛି ।

ଶଶାଙ୍କ—ଭଲ କରିଚ । ତମେ ବାହାରିଯାଅ ମୋ ଆଗରୁ । ସବୁ ନିମକହାରାମ ।

ଲୁଲୁ—Thank you ! ଯାଉଚି ସାର୍ । ( ପଳାଇଲି )

ଶଶାଙ୍କ—ଜଗା ! ଜଗା !!

ପଶୁପତି—( ଆସିଲେ ) ଆଜ୍ଞା !

ଶଶାଙ୍କ—ଓଃ, ତମେ ଆସି ଯାଇଚ ନା ବେଶ୍ ଭଲ ହୋଇଚି । ଆଚ୍ଛା କହିପାରିବ କଟକରୁ ମୁଁ Tutor ପଠାଇବା ପୂର୍ବରୁ କାହାକୁ ତୁମେ ନିଯୁକ୍ତ କରିଥିଲ ?

ପଶୁପତି—ଏତକ କହି ପାରିବନି ଆଜ୍ଞା ? ମୁଁ ତାକୁ ନିଜେ ଡାକି ଆଣି କାମରେ ମୁକରର କରିଥିଲି ।

ଶଶାଙ୍କ—ଖୁବ୍ ଭଲ କରିଚ, କାହିଁକି ? ତମକୁ କିଏ ହୁକୁମ ଦେଇଥିଲା ? କଟକରୁ ମୁଁ ଟିଉଟର ପଠାଇଥାନ୍ତି, ଅପେକ୍ଷା କରିପାରିଲ ନାହିଁ କାହିଁକି ?

ପଶୁପତି—ମୋର ଦୋଷ ହୋଇଚି ଆଜ୍ଞା, ମୋର ଦୋଷ ହୋଇଚି ।

ଶଶାଙ୍କ—ନା, ନା, କାହାରି ଦୋଷ ନୁହେଁ, ଦୋଷ ମୋର ହୋଇଚି । ଆଉ ସମସ୍ତେ ଠିକ୍ ଅଛନ୍ତି...ଅଚ୍ଛା ତାର ବିଶେଷ କିଛି ପରିଚୟ ଦେଇ ପାରିବ ?

ପଶୁପତି—ହଁ ଆଜ୍ଞା ! ତାଙ୍କ ନା'ତ ଭାନୁଶଙ୍କର । ହେଲେ ତାଙ୍କୁ ଭାନୁ ବାବୁ ବୋଲି ଡାକନ୍ତି । ଘର ଏଇ ବିଳାସପୁର ଚୌଧୁରୀ ସାଇରେ ।

ଶଶାଙ୍କ—ଚୌଧୁରୀ ଘାଇରେ ?

ପଣ୍ଡୁପତ—ହଁ ଆଜ୍ଞା, ରୁଦ୍ରନାରାୟଣ ଚୌଧୁରୀଙ୍କ ପୁଅ ସେ ।

ଶଶାଙ୍କ—ପଣ୍ଡୁପତ !

ପଣ୍ଡୁପତ—ଆଜ୍ଞା ।

ଶଶାଙ୍କ—ଚୌଧୁରୀ ରୁଦ୍ରନାରାୟଣର ପୁଅ ସେ ।

ପଣ୍ଡୁପତ—ଆଜ୍ଞା ।

ଶଶାଙ୍କ—ରୁଦ୍ର ନାରାୟଣ ପୁଅ, ଭାନୁ ରୁଦ୍ରନାରାୟଣ । ରୁଦ୍ର ! ରୁଦ୍ର ଚୌଧୁରୀ !

ପଣ୍ଡୁପତ—ଆପଣ ତ ଜାଣିଥିବେ ।

ଶଶାଙ୍କ—ଜାଣେ, ଜାଣେ ପଣ୍ଡୁ ! ଭଲ ଭାବରେ ଜାଣେ । ରୁଦ୍ରନାରାୟଣ ମୋର ବାଲ୍ୟବନ୍ଧୁ । ମୋର ସହପାଠୀ । ତାର ପୁଅ ଭାନୁ ? ମୁଁ ତାକୁ ଭଲ କରି ଚିହ୍ନେ । ସେ ମୋର ଅନ୍ତରଙ୍ଗ ବନ୍ଧୁ । ତା ପୁଅ ଭାନୁ ଏ ଘରୁ ଆସି ଫେରିଯିବ···ନା, ନା, ମୁଁ ତାକୁ ସେମିତି ଯିବାକୁ ଦେବିନି···ପଣ୍ଡୁ ତାକୁ ଡାକିଆଣ···ନିମନ୍ତ୍ରଣ କରିଆଣ···ଆଜି ସନ୍ଧ୍ୟାରେ ତାର ଏ ଘରେ ନିମନ୍ତ୍ରଣ ।

ପଣ୍ଡୁପତ—ଆଜ୍ଞା, ସେ ତ ଚାକିରୀ ପାଇଁ କାଲି ଭୋରୁ ଚାଲି ଯାଉଛନ୍ତି ବୋଲି ଶୁଣିଥିଲି ।

ଶଶାଙ୍କ—ନା, ନା, ମୁଁ ତାକୁ ଯିବାକୁ ଦେବିନି ପଣ୍ଡୁ । ଯାଅ, ତାକୁ ମୋର ନିମନ୍ତ୍ରଣ ଜଣାଇ ଆସ, ହଁ ଶୀଘ୍ର ଯାଅ ।

ପଣ୍ଡୁପତ ଯାଉଛି ଆଜ୍ଞା । ( ଚାଲିଗଲା )

ଶଶାଙ୍କ—ମୋର ବାଲ୍ୟବନ୍ଧୁ ରୁଦ୍ରର ପୁଅ ଭାନୁ ! ଚୌଧୁରୀ ବଂଶର କୁଳଦୀପ !

—ଆଲୁଅ ଲିଭିଗଲା—

## ନବମ ଦୃଶ୍ୟ

[ ବଉଳମୂଳ, ରାତି । ଭାନୁ ସୁଟ୍‌କେସ୍ ଧରି ଅପେକ୍ଷା କରିଛି ମାଳାକୁ । ବଂଶୀର ସ୍ୱର ଶୁଭୁଥାଏ ]

ମାଳା—( ଆସିଛି ) ଭାନୁ ! ବହୁତ ଡେରି ହୋଇଗଲା ନା ? କ୍ଷମା କରିବ ଭାନୁ ! ଆରେ ! ତମ ମୁହଁ ଏପରି ଶୁଖି ଯାଇଛି କାହିଁକି ?

ଭାନୁ—ତମେ ଆସିଛ ମାଳା ?

ମାଳା—ହଁ ଭାନୁ ! ଘର ଦ୍ୱାର, ମାନ ଇଜ୍ଜତ, ସବୁ ପଛରେ ପକେଇ ନିଜ ରକ୍ତର ବାପା ମାଆଙ୍କୁ ପର କରି ମୁଁ ଚାଲି ଆସିଛି ଭାନୁ !

ଭାନୁ—ପଟ୍ଟନାୟକ ବଂଶର ଏକମାତ୍ର ରତ୍ନଦୀପ । ତାକୁ ତୁମେ ସବୁଦିନ ପାଇଁ ଲିଭେଇ ଦେଇ ଆସିଲ ମାଳା ! ତୁମେ ଲିଭେଇ ଦେଇ ପାରିଲ ? ରକ୍ତ ଦେଇ ଯେଉଁମାନେ ତୁମକୁ ଗଢ଼ିଥିଲେ, ତାଙ୍କ ଗ୍ରୀବାରେ ତୁମେ ଗୋଟିଏ କଳାଗାର ଟାଣି ଦେଇ ଆସି ପାରିଲ ? କାଲି ସକାଳେ ଗାଁ ଲୋକଙ୍କ ଆଗରେ ସେମାନେ ମଥା ଟେକି ପାରିବେନି ମାଳା ! ଆଉ ତାଙ୍କ ଗ୍ରୀବାର ଭଙ୍ଗାହାଡ଼ ଉପରେ ତୁମେ କେଉଁ ଦୂର ଦେଶରେ ରଚିବ ଗଢ଼ିବ ତୁମର ସ୍ୱପ୍ନ-ନୀଡ଼ !

ମାଳା—ଭାନୁ ! ଚୁପ୍‌କର ଭାନୁ ! ସେମିତି କହନି ! ମୁଁ ପାଗଳିନୀ ହୋଇଯିବି । ଯୋଉ ମାୟା ମୁଁ କାଟି ଦେଇ ଆସିଛି, ତାକୁ ମନେ ପକାଇ ମୋତେ ପୁଣି ପଛକୁ ଠେଲିଦିଅନା । ମୁଁ ସବୁ କରିଛି ଭାନୁ···ହେଲେ ତମରି ପାଇଁ ।

ଭାନୁ—ମାଳା !

ମାଳା—ତୁମେ ଆଜି କିଛି କହନି ଭାନୁ !

ଭାନୁ—ତୁମେ ସ୍ୱାର୍ଥପର ମାଳା !

ମାଳା   ଭାନୁ ! ସତ କହ ଭାନୁ ! ବାପା ତୁମକୁ ନିମନ୍ତ୍ରଣ କରିଥିଲେ । ଖାଇଲାବେଳେ ତୁମକୁ କଣ କହିଛନ୍ତି ?

ଭାନୁ—କିଛି କହି ନାହାନ୍ତି ମାଳା ! ମୋର ବିଦେଶରେ ଚାକିରି ଖବର ଶୁଣି ଖୁସି ହୋଇଚନ୍ତି । ଆଉ ମୋର ଯାତ୍ରାପଥରେ ଶୁଭେଚ୍ଛା ଜଣେଇଛନ୍ତି ।

ମାଳା—ତାହାହେଲେ କାହିଁକି ତମେ ମୋତେ ଆଘାତ କରୁଚ ?

ଭାନୁ—ମୁଁ ତୁମକୁ ଆଘାତ କରୁନି ମାଳା ! ମନ ଭିତରେ ମୁଁ ଯେ କି ଆଘାତ ପାଉଚି, ତା ତୁମେ ବୁଝି ପାରିବନି । ଯୋଉ ଘରେ ଆଜି ସନ୍ଧ୍ୟାରେ ଥିଲା ମୋର ନିମନ୍ତ୍ରଣ, ସେଇ ଘରର ଯତ୍ନ ସଞ୍ଚିତ ରତ୍ନଟିକୁ ମୁଁ ଦସ୍ୟୁପରି ଅପହରଣ କରି ନେଇଯିବି କେଉଁ ବିବେଚନାରେ···କେଉଁ ସାହସରେ ? ଆଜି ବାପା ତୁମର ମୋ ଯାତ୍ରାପଥରେ ଶୁଭେଚ୍ଛା ଜଣେଇଛନ୍ତି, ମୋତେ ଆଶୀର୍ବାଦ ଜଣେଇଚନ୍ତି । କାଲି ସକାଳୁ ଯେତେବେଳେ ଜାଣିବେ, ମୁଁ ତାଙ୍କର ଅଲିଅଳୀ କନ୍ୟାକୁ ଅପହରଣ କରି ନେଇ ଯାଇଚି ଅର୍ଦ୍ଧରାତ୍ରିର ଅନ୍ଧକାରରେ, ସେ କ'ଣ ଭାବିବେ ମାଳା ?

ମାଳା—ତୁମ ସାଙ୍ଗରେ ମୁଁ ଯୁକ୍ତି ଚାହେଁନା ଭାନୁ ! ତୁମକୁ ଯିବାକୁ ହେବ । ମୋତେ ନେଇ ତୁମକୁ ଦୂରକୁ ଯିବାକୁ ହେବ । ଚାଲ ଭାନୁ ! ଆଉ ଡେରି କରନା । ଏ ନଈ ପାରହୋଇ ଆମକୁ ବହୁତ ଦୂର ଯିବାକୁ ପଡ଼ିବ ।

ଭାନୁ—ମାଳା ! ( ମଥାରେ ହାତଦେଇ )

ମାଳା—କ'ଣ ହେଲା ଭାନୁ ?

ଭାନୁ—ମୋ ଦେହ କ'ଣ ହୋଇଯାଉଛି ମାଳା ?

ମାଳା—ମିଛ ! ସବୁ ତୁମର ଛଳନା ।

ଭାନୁ—ଛଳନାକୁ ଯେ ସତ ବୋଲି ଭାବେ, ତା ଆଗରେ ମୁଁ ଛଳନା ବା କାହିଁକି କରିବି ? ବିଶ୍ୱାସ କର ମାଳା ! ମୋ ଦେହଟା କ'ଣ ହୋଇ ଯାଉଚି ।

ମାଳା—ଭାନୁ ! ( ଭାନୁ ପଥର ଉପରେ ଆଉଜି ପଡ଼ିଲା )

ଭାନୁ—ପାଣି ମାଳା ! ପାଣି !!

ମାଳା—ଭାନୁ ! କ'ଣ ହେଲା ଭାନୁ ! ତମର କଣ ହେଲା ?

ଭାନୁ—ମାଳା ! ପାଣି ମାଳା !!

ମାଳା—ଆଣୁଚି ଭାନୁ । ( କହି କହି ଦୌଡ଼ିଗଲା ) ।

( ଭାନୁ ଅଚେତ ହୋଇ ଘୁମୁରି ଘୁମୁରି ପଡ଼ି ରହିଲା । ପ୍ରବେଶ କଲେ ଶଶାଙ୍କ ପଟ୍ଟନାୟକ, ସଙ୍ଗରେ ଦୁଇଜଣ ଗୁଣ୍ଡା । ଶଶାଙ୍କ ଇଙ୍ଗିତ ଦେଲେ, ଲୋକ ଦୁଇଜଣ ଭାନୁକୁ ଟେକି ନେଇଗଲେ । କିଛି ସମୟ ପରେ ପ୍ରବେଶ କଲା ମାଳା···ଅଞ୍ଜୁଳାରେ ପାଣି )

ମାଳା—ଭାନୁ ! ଭାନୁ ( ଭାନୁକୁ ଏପଟ ସେପଟ ଖୋଜିଲା; ମାତ୍ର କେଉଁଠି ନ ପାଇ ନିରାଶ ହେଲା । ଏହି ସମୟରେ ଶଶାଙ୍କ ପଛପଟୁ ଆଗେଇ ଆସି ମାଳାର ଗୋଟିଏ ହାତକୁ ଜବରଦସ୍ତ ଧରି ପକେଇଲେ ଓ ଜୋରରେ ହସି ଉଠିଲେ । ମାଳା ଚିତ୍କାର କରିବାକୁ ଚେଷ୍ଟା କଲାବେଳେ ଶାଶାଙ୍କ ଅନ୍ୟ ହାତରେ ତାର ପାଟିକୁ ବୁଜିଦେଲେ )

ମାଳା—ବାପା ! ଭାନୁ······

ଶଶାଙ୍କ—ମୁଁ ତାକୁ ମୋ ନିଜ ହାତରେ ବିଷ ଦେଇଚି ।

ମାଳା—( ଚମକି ପଡ଼ି) ବାପା !!

—ଡ୍ରପ୍—



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଶ୍ରୀକାନ୍ତର ଗାଁର ଘର, ସୋଫାସେଟ୍, ବହି ଆଲମାରି, ବହି କ ରଖିବା ଷ୍ଟାଣ୍ଡ ଦେଖାଯାଏ; ପଛରେ ରେଡିଓ ପାଇଁ ଗୋଟାଏ ଟେବୁଲ ପଡ଼ିଛି । ତା ପଛରେ ରେଡିଓ । ସମୟ ସକାଳ । ଷ୍ଟେଜ ଉପରେ ନିର୍ମଳ ରେଡିଓଟା ଖୋଲି ଦେଇଥାଏ, ସକାଳର ସାହାନାଇ କଟକ ଷ୍ଟେସନର ଶୁଭୁଥାଏ ।

ଭିତରପଟୁ ଶ୍ରୀକାନ୍ତ ଡାକି ଡାକି ଆସିଲେ ନିର୍ମଳ' 'ନିର୍ମଳ' । ନିର୍ମଳ ରେଡିଓ ବନ୍ଦ କରେ ଏବଂ ଗୋଟାଏ ଫାଇଲ ଉଠାଇ ଅପେକ୍ଷା କରି ରହେ ]

ଶ୍ରୀକାନ୍ତ—ନିର୍ମଳ ! କଲିକତାରୁ କିଛି ଖବର ଆସିଛି ?

ନିର୍ମଳ—ହଁ ସାର୍, ମିଷ୍ଟର ସେନଗୁପ୍ତ ଇଉନିଟ ନେଇ ତା ୧୫ ରିଖରେ ଆସି ପହଞ୍ଚିବେ ।

ଶ୍ରୀକାନ୍ତ—ଅଲ୍‌ରାଇଟ୍ । ଆମର ସବୁ ପ୍ରସ୍ତୁତ ଅଛି ତ ?

ନିର୍ମଳ—ହଁ ସାର୍ ।

ଶ୍ରୀକାନ୍ତ—ତମେ ଯାଅ । ( ନିର୍ମଳ ଚାଲିଯାଉଥିଲେ ) ହଁ ଶୁଣ ! ଭାନୁ ତ ଭଲ ହୋଇଗଲାଣି । ମୁଁ ଭାବୁଛି ତା'ର ଯେଉଁ ଷ୍ଟୋରିଟା, ଖୁବ କାଟେଡ଼ ହୁଅନ୍ତା ।। ( ବସିପଡ଼ିଲେ ) ଆଚ୍ଛା, ତାକୁ ଟିକିଏ ଡାକି ଦିଅ ତ ! ( ନିର୍ମଳ ଚାଲିଗଲେ )

ଭାନୁ (ପଶି ଆସିଲା, ଦେଖିଲା ଫାଇଲ ଦେଖିବାରେ ବ୍ୟସ୍ତ ଶ୍ରୀକାନ୍ତ) କରେ ସକାଳୁ ସକାଳେ କୁଆଡ଼େ ବାହାରିଲୁ ? (ବସିପଡ଼ିଲା)

ଶ୍ରୀକାନ୍ତ—ନା ଭାଇ ! ଯିବା ବନ୍ଦ କଲି । ଆଚ୍ଛା ଭାନୁ ! ତୁ ଯେଉଁ ଷ୍ଟୋରୀଟା କହୁ ନ ଥିଲୁ···

ଭାନୁ ଷ୍ଟୋରୀ ?

ଶ୍ରୀକାନ୍ତ—ହଁ ମ ! ପଅରଦିନ କହୁ ନ ଥିଲୁ ? ଗ୍ରେଟ ପିଲାବେଳୁ ପୁଅଟିଏ ଝିଅ ଦୁଇଟି ଖେଳୁଥିଲେ ଗାଁର ବଉଳଗଛ ମୂଳେ, ଆମ୍ବ ତୋଟାରେ, ନଈ ପଠାରେ । ତା'ପରେ ବଡ଼ ହେଲେ । ଗୋଟାଏ ବଡ଼ ଡିଗ୍ରୀ ନେଇ ନାୟକ ଫେରେ ତା' ଗାଁ ମାଟିକୁ, ଆଉ ପ୍ରଥମେ ପାଏ ତା'ର ସେଇ ଧୂଳି ଖେଳର ନାୟିକାକୁ ପଢ଼େଇବାର ଅଧିକାର । ବଡ଼ଲୋକ ଘରର ଅଲିଅଳି ଝିଅ ତାକୁ ଚହ୍ନି ପାରେନା । ଇମ୍ପସିବଲ ନାଇସ୍ । 'ପରେ ଚହ୍ନେ ତା'କୁ । ଆଖି ଆଗରେ ନାଚଯାଏ ଗାଁ ସ୍କୁଲ, ବଉଳଫୁଲ, ନଈପଠା ଆଉ ଆମ୍ବତୋଟାର କଣେଇ ବାହାଘର । ଆଉ ତା'ପରେ ଛୁଟେ ପ୍ରେମର ଉତ୍ସ । କିନ୍ତୁ ନାୟିକାର ଅସୁମାରି ଆବେଦନ ନିବେଦନ ନିଷ୍ଫଳ ହୁଏ ବିଚାରି ତା'ର ଆଦର୍ଶବାଦୀ ସେଇ ନାୟକ ପାଖରେ । ହେଲେ ତା'ପରେ ??

ଭାନୁ –ତାପରେ, ଦିନ ଗଡ଼ି ଚାଲେ । ଆଉ ଗଡ଼ିଚାଲେ ନାୟିକାର ବାଲିଘରଣ ଧରିବାର ଦିବାସ୍ୱପ୍ନ । ଆଉ ଏଣେ ବିଚାରି ନାୟକ ମନରେ ଅପରିସୀମ ଦ୍ୱନ୍ଦ୍ୱ ।

ଶ୍ରୀକାନ୍ତ ଦ୍ୱନ୍ଦ୍ୱ କାହିଁକି ?

ଭାନୁ—ଲକ୍ଷପତିର ଝିଅ ସେ । ଲକ୍ଷ ଖିଆଲ ଭିତରୁ ତା'ର ଗୋଟାଏ ଖିଆଲ ଭଲପାଇବା, ପ୍ରେମକରିବା । ଯେଉଁଟାକୁ କି ତା'ର ସମାଜ ସ୍ୱୀକାର କରିବାକୁ କୁଣ୍ଠାବୋଧ କରିବ ।

ଶ୍ରୀକାନ୍ତ ଆଚ୍ଛା ଭାନୁ, ତୁ ଯଦି କହୁଛୁ ନାୟକ ନିତି ଯାଏ, ପାଠ ପଢ଼ାଏ, ଆଉ ଲକ୍ଷପତି ବାପ-ମା'ଙ୍କର ଅଫୁରନ୍ତ ସ୍ନେହପାଏ, ସେଠି ବାଧା, ପ୍ରତିବନ୍ଧକ ଆସିବ କୁଆଡ଼ୁ ?

ଭାନୁ—( ହସିଉଠିଲି ) ଧରନେ ଶ୍ରୀକାନ୍ତ, ଏଇଠି ସୃଷ୍ଟି ର ବ୍ୟତିକ୍ରମ । ଗୋଟାଏ ପଟେ ସେହି ପରିବାରର ହସିବା କଥା, ମନକଣା ବ୍ୟବହାର ଏବଂ ଆଭିଜାତ୍ୟର ଅହମିକା ଆଉ ଅନ୍ୟପଟେ ନାୟିକାର ନାରୀତ୍ୱର ଦାବୀ, ପ୍ରଣୟର ଉନ୍ମାଦନା । ମାନବିକତାର ପ୍ରବୃତ୍ତି ଗୋଟାଏ ବିରାଟଦ୍ୱନ୍ଦ୍ୱ ହୋଇପଡ଼ିଲା ନାୟକ ପାଖରେ ।

ଶ୍ରୀକାନ୍ତ—ତା'ପରେ ?

ଭାନୁ—ତା'ପରେ ଗୋଟାଏ ରାତି । ଯେଉଁ ରାତି ତାକୁ ବାଧ୍ୟକଲା ତା'ର ସ୍ୱପ୍ନ ସ୍ୱଜନ ଗାଁ ମାଟି ଛାଡ଼ି ଚାଲିଯିବାକୁ । ତା'ର ଧୂଳି ଖେଳର ସାଥୀକୁ ପ୍ରତ୍ୟାହତ କରିବାକୁ । ସେଇ ରାତିରେ ସେ ପାଇଲା ନାୟିକା ଘରୁ ନିମନ୍ତ୍ରଣ ।

ଶ୍ରୀକାନ୍ତ—ନିମନ୍ତ୍ରଣ ?

ଭାନୁ—ହଁ, ନିମନ୍ତ୍ରଣ ! ତା'ର ଯାତ୍ରାର ଶୁଭ ମନାସି ଜୁଟିଲା ଅସୁମାରି ଶୁଭେଚ୍ଛା, ସଦିଚ୍ଛା, ଆଉ ଶୁଭାଶିଷ । ସେଇଥିରେ ଆତ୍ମହରା ହୋଇ ପଡ଼ିଲା ନାୟକ, ଭୁଲିଗଲା ସବୁକିଛି । ଛଳନାର ବିଷକୁ ଆକଣ୍ଠ ପାନକରି ଶେଷଥର ପାଇଁ ପ୍ରଣତି ଜଣାଇଲା ତା'ର ଧୂଳି ଖେଳର ମୂକସାକ୍ଷୀକୁ । ଲକ୍ଷ୍ୟ ପଥରେ ପାଦ ଦେଲା ବେଳେ ସବୁରି ଅଲକ୍ଷ୍ୟରେ ଆସିଲା ନାୟିକା; ମିଛ ଆଭିଜାତ୍ୟର ମୋହ ନ ଥିଲା ତାର, ଥିଲା ପ୍ରଣୟର ନିଶା । ସେ ହେବ ସହଯାତ୍ରୀ । ପ୍ରତିବାଦ କଲା ସରଳବିଶ୍ୱାସୀ ନାୟକ । ହେଲେ ଲହରୀର ମଥାପିଟା ଆବେଦନ ପାଖରେ ବାଲୁଚରର ସମସ୍ତ ଆସ୍ଫାଳନ ବ୍ୟର୍ଥ ହେଲା । ହାରିଗଲା ସେ । ଆଉ ସେତିକିବେଳେ ସରଳ ବିଶ୍ୱାସୀ ମନ ତା'ର ଜଳିଗଲା ଛଳନା, ପ୍ରବଞ୍ଚନାର ବିଷରେ । ( ଭାବପ୍ରବଣ ହୋଇପଡ଼ିଲା )

ଶ୍ରୀକାନ୍ତ—ତା'ପରେ ?

ଭାନୁ—ଉଁ, ତାପରେ ( ପ୍ରକୃତିସ୍ଥ ହୋଇ ) ତା'ପରେ ଆଉ ଭାବିନ । ଆଚ୍ଛା, କ'ଣ କରାଯିବ କହିଲୁ ?

ଶ୍ରୀକାନ୍ତ—ଠିକ୍ ଅଛି । ମୁଁ ଟିକିଏ ଭାବିନିଏ । ହଁ ଭାନୁ, ତୁ ଯିବୁ ନା କରେ ? ମିଷ୍ଟର ରାୟ ପରା ତତେ ନିମନ୍ତ୍ରଣ କରିଥିଲେ ?

ଭାନୁ—( ଟିକିଏ ଅନ୍ୟମନସ୍କ ଭାବରେ ବନ୍ଦ ଆଲମିରା ପାଖକୁ ଗଲା ) ନା ଭାଇ ଆଜି ନୁହେଁ ! ବରଂ କାଲି ଯିବା । ( ଶ୍ରୀକାନ୍ତ ଉଠିଲେ ଓ ଭିତରକୁ ଗଲାବେଳକୁ ) ଆରେ କାନ୍ତ, ତୁ କହୁଥିଲୁ ପରା ତୋ ସଚ୍ଚି ଦାଦାଙ୍କ ଆସିବାର ଥିଲା ?

( ସଚ୍ଚିଦା ପ୍ରବେଶ କରନ୍ତି ବାହାରୁ, ବୟସ ୪୦ । ୪୫; ମୁହଁରେ ଗୋଟାଏ ଚନ୍ଦ୍ରାର ମଳିନ ଛାପା, ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ବେଶ ସାଧାସିଧା )

ସଚ୍ଚି—ନ ଆସି କ'ଣ ଚାରା ଅଛି । ମରିବାକୁ କ'ଣ ଏମାନେ ଛାଡ଼ିଦେବେ ?

ଭାନୁ—( ପ୍ରଣାମ କଲା )

ଶ୍ରୀକାନ୍ତ—ଆମେ ଏକାଠି ପଢ଼ୁଥିଲୁ କଲିକତାରେ । ଏ ହେଲା ଭାନୁ । ଆଉ ଇଏ ମୋର ସବୁକିଛି । ମାନେ ସଚ୍ଚିଦାଦା ।

( କୁଣ୍ଢେଇ ପକେଇଲା )

ଭାନୁ—ଆପଣଙ୍କ କଥା କାନ୍ତଠୁଁ ଅନେକ ଶୁଣିଛି ଦାଦା । ଯାହାହେଉ, ଦେଖାଟା ଆଜି ହେଇଗଲା ।

ସଚ୍ଚି—ଦେଖା ତ ଅନେକ ଦିନୁ ହେଇଥାନ୍ତା ! ହେଲେ କ'ଣ କରିବ ? ଏଡ଼େ ବଡ଼ ଇଲାକାଟାର ସମସ୍ତ କାମ କ'ଣ ଗୋଟିଏ କଥା ? ହେଲେ ତମେ କ'ଣ···?

ଶ୍ରୀକାନ୍ତ—କ'ଣ ? ଏମ୍. ଏ. ରେ ତ ଫାଷ୍ଟକ୍ଲାସ । ସରକାରୀ କଲେଜରେ ଚାକିରି ବାକିରି ନ କରି ବାବୁ ଗାଁ ସ୍କୁଲରେ ମାଷ୍ଟର ହେଲେ । ଦୁଇଟା ଟଙ୍କା ପଇସା ଧରି ବାବୁ ଯାଉଥିବେ; ବାଟରେ ଚୋର ସବୁ, ଖୁବ୍ ଉତ୍ତମ ମଧ୍ୟମ ଦେଇ ଜୀବନଟାକୁ ଛାଡ଼ିଦେଇ ବାକି ସବୁ ନେଇ ଗଲେ । ସେଦିନ ଶିକାରକୁ ନ ଯାଏ, ନା ଏ ବାବୁଙ୍କୁ ନ ପାଏ ।

ସଚ୍ଚି—ସତେ ! ଗୋଟାଏ ରିଷ୍ଟ କଟିଗଲା ବୋଲି ଜାଣ ।

ଶ୍ରୀକାନ୍ତ—ସେ ରିଷ୍ଟ ମୁଁ ଶିକାରକୁ ନ ଯାଇଥିଲେ କ'ଣ କଟିଥାନ୍ତା ?

ସଚ୍ଚୀ—ବୁଝିଲ ବାପା (ଘନୁକୁ) ସବୁଦିନେ ଏମିତି । ଦିନେ ହେଲେ କ'ଣ ବୁଝିଲି ! ଯେତେବେଳେ କହୁଛି କ'ଣ କାନରେ ପୂରେଇଲା, ଏବେ ବଡ଼ ଇଲକା, ସେ ଝାଏ ଲୋକ ମୁଁ କ'ଣ କରିବ କହୁଲ ?

ଶ୍ରୀକାନ୍ତ—ଦାଦା, ତୁମେ ଏଠି ଘନୁ ସାଙ୍ଗରେ ବସି କ'ଣ କରିବ ନ କରିବ ତାର ଗୋଟାଏ ମୀମାଂସା କର, ମୁଁ ଗଲିଲି । ଅନେକ କାମ ମୋର, ଗୋଟାଏ ଲୋକ ମୁଁ । କେହି ତ କିଛି କାନକୁ ନେଲେନି । (ଯିବାକୁ ଯାଉଁ ଯାଉଁ)

ସଚ୍ଚୀ—ଶୁଣୁଛ ତ, ଶୁଣୁଛ ବାବା ! ଆଚ୍ଛା କେତେଦିନ ଏମିତି ଆଉ ଚଳିବ ? ମୁଁ ବା କେତେଦିନ ଯାଏ ଏମିତି ବସିଥିବ ? ବୁଝିଲ ବାବା, ବାପା ବୋଉ ଥିଲେ, ତା ଚିନ୍ତା ମୋତେ ଲାଗୁ ନ ଥିଲା । ଗୋଟାଏ ବୋଲି ପିଲା ଘରକୁ; ଯାହା ତା ମନକୁ ଆଇଲା କରୁଥିଲି । ହେଲେ ଏବେ···

ଶ୍ରୀକାନ୍ତ—ଏବେ ଗଲିଲା ତମର ଅଭିଯୋଗ । ବୁଝିଲ ଘନୁ ! ଦାଦାଙ୍କର ଏଇ କଥା ଗଲାନାହିଁ । ଭଲ ନାହିଁ ମନ୍ଦ ନାହିଁ, ଯିଏ ଆଇଲା ଗଲା ସବୁରି ଆଗରେ ଏଇ ମାଦଳା ପାଞ୍ଜିଟା ଖୋଲିବସନ୍ତି । ହେଲେ ଦାଦା, ମୁଁ ସିନା କିଛି କରୁନଥିଲି, ଏବେ ଘନୁ ତ ଆସିଲା, ତାକୁ ଠିକଏ ଟ୍ରେନିଂ ଦବା ଆରମ୍ଭ କର । ମୋ ପିଣ୍ଡ ଛାଡ଼ । ଏଇ (ଘନୁ) ଦାଦାଙ୍କୁ ଠିକଏ ବୁଝାବୁଝି କରିଦେ । ଘର ଭଲପିଲା ଦାଦା, କଲିକତାରେ ସାଙ୍ଗ ପିଲା ଆଉ ଆମ ପ୍ରଫେସରମାନଙ୍କୁ ଏମିତି ହାତେଇ ନେଇଥିଲା ଯେ, ତା ଆସିବା ଦିନ ସମସ୍ତେ ଆସି ଷ୍ଟେସନରେ । ତମର ଯା' କହିବାର କଥା, ତାକୁଇ କହ ଯେ, ସେ ସବୁ କରିଦେବ । ( ଗଲି ଯାଉଥିଲା )

ଘନୁ—ଆଉ ତୁ··· ? ( ଶ୍ରୀକାନ୍ତ ରହିଗଲା )

ସଚ୍ଚୀ—ତା କଥା କାହିଁକି କହୁଛ ? ଏଇନେ ଯିବେ ଶିକାର କରିବାକୁ, ନ ହେଲେ ଫଟୋ ଉଠେଇ ସିନେମା କରିବାକୁ । ହେଲେ ବାପା, ସେ ସବୁରୁ ଆମକୁ ମିଳିବ କ'ଣ କହୁଲ ? ଏ ଦେଶରେ ଖଣ୍ଡେ ପିନ୍ଧି ଗଣ୍ଡେ ଖାଇବାକୁ ପାଉନୁ ଆମେ, ସେ ସବୁ ବୁଝିବ କିଏ ?

ଶ୍ରୀକାନ୍ତ—ଖନୁ ବୁଝିବ ଦାଦା, ଟିକିଏ ଭଲ କରି ବୁଝାଅ !

( ଖନୁକୁ ଥଛା କରି ବାହାରକୁ ଚାଲିଗଲ )

ସଚୀ—ଦେଖିଲ, କେମିତି ଢଙ୍ଗ ଢାଙ୍ଗ ହୋଇ ବାହାରିଗଲା ! କୁଆଡ଼େ ଯାଇଁ ବଣ ଜଙ୍ଗଲ, ନଈନାଳ ବାରି ଅପନ୍ତରାରେ ବୁଲି ବୁଲି ଫେରିବେ ରାତି ଅଧରେ । କାହାକୁ ସମ୍ଭାଳିବି ମୁଁ ? ହାଣ୍ଡିଗୁହାଣ୍ଡି କରିବାକୁ ବାରି ଲୋକଙ୍କର ଧାଁ ଦଉଡ଼, ସେଥିରେ କୋଉ କରି ମୁଁ ଦେଖିବି !

ଖନୁ—ଆପଣ ଯଦି ନଦେଖିବେ ତ ଦେଖିବ ଆଉ କିଏ ଦାଦା ? ସିଏ ତ ପିଲାଦିନୁ ସହରରେ ବଢ଼ିଆସିଲା ତା'ର ଖିଆଲ ନେଇ ।

ସଚୀ—( ବିରକ୍ତରେ ) ଖିଆଲ, କି ଖିଆଲ ତମେ କହୁଛ ବାବୁ ? ଖିଆଲ ବୋଲି ଘରଦ୍ୱାର, ବାପ ମା, ବନ୍ଧୁବାନ୍ଧବ କିଛି ନାହିଁ ? ପିଲା ହୋଇଥିଲା, କହିବାର କିଛି ନଥିଲା । ହେଲେ ଏବେ ବଡ଼ ହେଲା, ମୁଣ୍ଡକୁ ହାତ ପାଇଲା, ନିଜ ଧନ୍ଦା ଏବେ ନିଜେ ବୁଝୁ । କିଛି ମୂର୍ଖ ତ ହୋଇନି । ପାଠଶାଠ ପଢ଼ିଛି ! ବି. ଏ., ଏମ୍ ଏ. ପାଶ୍ କରିଛି । ବାପା ଅଜା ଏତେ ବଡ଼ ଇଲାକା ଛାଡ଼ି ଚାଲିଗଲେ, ତାକୁ ତ ଫେରେ ଥଇଥାନ କରିବ ?

ଖନୁ—ଅବିକା ଏମିତି ଲଗାମ ଛଡ଼ା ହୋଇ ବୁଲୁଚନା, ସେ ବଳେ ବଦଳି ଯିବନି !

ସଚୀ—ବଦଳିବ ? କେବେ ବଦଳିବ ?? କଣ ବଦଳିବ ??? ମା'ବିଚରା କେତେ ଆଶା କରିଥିଲା, ପୁଅର ବୋଲମୁକୁଟ ଦେଖିବ, ଘରକୁ ଲକ୍ଷ୍ମୀ ଆଣିବ, ହେଲେ କାହିଁ ? ହତଭାଗିନୀ ବିଚରା ତା ବାଟ କାଟିଲା । ଆଉ ତାପରେ······

ଖନୁ—ତା'ପରେ···? କଣ ହେଲା ଦାଦା ?

ସଚୀ—ତା' ପରେ ତା ବାପର କି ଝୁଙ୍କ୍ ଉଠିଲା ଯେ, ଦିନରାତି ଖାଲି ଚାଲିଲା ଛବି ଅଙ୍କା ? ଖାଲି ତୁଳି ଆଉ ରଙ୍ଗ—ରଙ୍ଗ ଆଉ ତୁଳି ।

ଖନୁ—ଛବି ଅଙ୍କା ? ?

ସଚ୍ଚୀ—ହଁ ରେ ପୁଅ, ଛବି ଅଙ୍କା । ରଙ୍ଗ ସରିଲା, ତୁଳି ମୁଣ୍ଡା ହେଲା, ହେଲେ ସେ ଛବି ଅଙ୍କା ସରିଲାନି ।

ଭାନୁ—ସରିଲାନି ?

ସଚ୍ଚୀ—କେମିତି ସରିବ ? ଖିଆଲ କ'ଣ ଏତିକରେ ସରେ ? ଝିଙ୍କ କ'ଣ ଏତିକରେ ମରେ ?

ଭାନୁ—ଦାଦା !!

ସଚ୍ଚୀ ନା, ନା, ଏ ସଉକ ନୁହେଁ, ଖିଆଲ ନୁହେଁ, ଝିଙ୍କ ନୁହେଁ, ଏ ଗୋଟାଏ ନିଶା । ସବୁ ନିଶା ଉପରେ ଏ ଗୋଟାଏ ବଡ଼ ନିଶା । ଯୋଉଥିରେ ମଣିଷ ଆଗତ ଭବିଷ୍ୟତ, ପର ଆପଣା, ଦୁଃଖ ସୁଖ, ମାନ ମହତ ସବୁ ଭୁଲିଯାଏ । ଏ ହେଉଛି ମଣିଷ ମନର ଗୋଟାଏ ଭୂତ ! ଏ ଭୂତ ସହଜରେ ଛାଡ଼େନି ପୁଅ । ମନ୍ତ୍ରର, ଯନ୍ତ୍ରର, ଗୁଣୀ ଗାରୁଡ଼ି ସବୁ ଅଚଳ ହୁଏ ଏଇଠି ।

ଭାନୁ—ଭୂତ ! ଏସବୁ କ'ଣ କହୁଛନ୍ତି ଦାଦା ?

ସଚ୍ଚୀ—ହଁ ରେ ପୁଅ, ଏମିତି ଗୋଟାଏ ଭୂତ ସେଦିନ ମାଡ଼ି ବସିଥିଲା ଭାଇଙ୍କ ମନରେ । ସେଇଥିରେ ସେ ଦୁନିଆକୁ ଭୁଲିଲେ, ନିଜକୁ ଭୁଲିଲେ । ହେଲେ ଭୁଲି ପାରିଲେନି ସେଇ ନିଶାକୁ । ନୂଆ ରଙ୍ଗ, ନୂଆ ତୁଳି ନେଇ ଆଙ୍କି ବସିଲେ ସେଇ ପୁରୁଣା ଛବିକୁ । ଖିଆ ପିଆ ସବୁ ଗଲା । ଦିନ ଗଲା, ରାତି ଆସିଲା । ସେଦିନ ସେ ନିଶୂନ ଅନ୍ଧାର ରାତି; ଅମୁହାଁ ଘରର ପଥର ପାଚିରି ସେପଟେ ଗୁମୁରି ଉଠିଥିଲା କାଳ ରାତିର ସେଇ ସର୍ବନାଶିଆ ଝଡ଼ । ଆଉ ସେ ମୁଦା ଘରର ଗୃହକାନ୍ଥ ଭିତରେ ଥିର ହୋଇ ଜଳୁଥିଲା ଗୋଟାଏ ଦୀପ…ଆଉ ଦି'ଟା ଆଖି !!

ଭାନୁ—ଦାଦା !

ସଚ୍ଚୀ--ଝଡ଼ ଅଟକିଲା, ପବନ ନଇଁଲା, ହେଲେ…ହେଲେ ସେ ମୁଦାଘରର କବାଟ ଆଉ ଫିଟିଲାନି ।

ଭାନୁ—ତା'ପରେ ??

ସଚୀ—( ପିଲଙ୍କ ପରି କାନ୍ଦି କାନ୍ଦି ) ଏମିତି ସବୁ ଲିଭିଗଲା । ସବୁ ଖିଆଲ, ନିଶା, ଫୁର୍ତ୍ତି ସବୁ ମରିଗଲା । ଏଇ ହାତରେ ତାକୁ ନେଇ ଯୁଇ ଉପରେ ଶୁଆଇ ଦେଇ ଆସିଲି । ଜଳିଗଲା, ପୋଡ଼ିଗଲା, ପାଉଁଶ ହୋଇଗଲା । ତାରି ସାଙ୍ଗରେ ପାଉଁଶ ହେଇଗଲେ ସେଇ ମନର ଭୂତ । ସେଇ ଭୂତ ପୁଣି କାନ୍ତକୁ କମିଆଁ କରିଛି, ପାଗଳ କରିଛି !!

ଭାନୁ—ଦାଦା !!

ସଚୀ—ସେ ଆସିଛି ରତ୍ନଗଡ଼ର ରତ୍ନଟିକୁ ଗ୍ରେଷ୍ଟାଇ ନେବାକୁ, ରାୟ ବଂଶର ଶେଷ ଦୀପଟିକୁ ଲିଭେଇ ଦବାକୁ—ଯାହାପାଇଁ ବାପା ମା, ଭାଇ ଭଉଜ ସବୁକିଛି ଭୁଲିଛି । ସେ ଯଧ୍ୱ ମୋ ଆଖି ଆଗରେ ଏମିତି ଭାବରେ ନଷ୍ଟ ହୋଇଯାଏ, କେମିତି ଦେଖିବି, କେମିତି ସହିବି । ମୁଁ ପାରିବିନି ଭାନୁ, ମୁଁ ପାରିବିନି । ଏ ଘରର ପଥର ପ୍ରାଚୀର ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିବ । ରାଧାମାଧବ ଅପୂଜା ରହିବେ । ବୃନ୍ଦାବତୀ ମୂଳେ ସନ୍ଧ୍ୟାବତୀଟେ ଜଳିବନି । ପିତୃପୁରୁଷ ପାଣି ଟିକେ ପାଇବେନି । ରକ୍ତମାଂସର ମଣିଷ ହୋଇ ଗ୍ରୁଡ଼ି ପାତ ଏଗୁଡ଼ା କେମିତି ସହିବି ?? ଯୋଉ ଘରର ପଥର କାନ୍ଥ ସାଙ୍ଗରେ ଏ ଗ୍ରୁଡ଼ିର ପଞ୍ଜରା ହାଡ଼ ମିଶି ରହିଛି, ସେ କାନ୍ଥ ଭାଙ୍ଗି ଯିବ ତ ମୋ ପଞ୍ଜରା ହାଡ଼ ଗୁଡ଼ାକ ଭାଙ୍ଗି ଯିବନି ! ମୁଁ ପାରିବିନି ଭାନୁ···ମୁଁ ପାରିବିନି ( କାନ୍ଦୁଛି )

ଭାନୁ—ଦାଦା !!

ସଚୀ—( ଭାନୁର ହାତ ଦ'ଟା ଧରି ) ଭାନୁ ! ତୁ ତା'ର ସାଙ୍ଗ, ତୁ ତା'ର ବନ୍ଧୁ, ତୁ ମତେ କଥା ଦେ, ତୁ ତାକୁ ଏ ଅବାଟରୁ ଫେରେଇ ଆଣିବୁ ।

ଭାନୁ—ଦାଦା !!

—ଆଲୋକ ଲିଭିଗଲା—

## ଦ୍ୱିତୀୟ ଦୃଶ୍ୟ

[ ଶଶାଙ୍କର ଅଳନ୍ଦ । ସମୟ୍ ଦିନ । କଲ୍ୟାଣୀ
ଓ ଶଶାଙ୍କ କଥା ହେଉଥିଲେ ]

ଶଶାଙ୍କ—ଏଥିପାଇଁ ଯଦି ମୁଁ ଦୁନିଆରେ କାହାକୁ ଦାୟୀ କରେ, ସେ ହେଉଛ ତୁମେ । ତୁମେ ତାକୁ ଦେଇଚ ସୁଯୋଗ ଆଉ ପ୍ରଶ୍ରୟ । ତାହା ନ ହେଲେ ଶଶାଙ୍କ ପଟ୍ଟନାୟକ ବଂଶର ଆଭିଜାତ୍ୟ ଉପରେ କଳାଦାଗ ଟାଣିବାର ଦୁଃସାହସ ଭାନୁର କାହିଁକି ହୁଅନ୍ତା ? ଏ ଭୁଲ ମାଳାର ନୁହେଁ, ଏ ଭୁଲ ତୁମର ।

କଲ୍ୟାଣୀ—ମୋର !!!

ଶଶାଙ୍କ—ହଁ ତୁମର । ତୁମେ ମତେ ଅପେକ୍ଷା ନ କରି ହଠାତ୍ ଗୋଟାଏ ଟିଉଟର ବନ୍ଦୋବସ୍ତ କରିଦେଲ କାହିଁକି ? କଅଣ ଏମିତି ଦରକାର ପଡ଼ିଲା । ପୁଣି ଠିକ୍ କଲ କାହାକୁ ନା ଜଣେ ଅପରିଚିତ ଯୁବକକୁ ।

କଲ୍ୟାଣୀ—ରୁଦ୍ର ଚୌଧୁରୀଙ୍କ ପୁଅ "ଭାନୁ", ତୁମେ ତାକୁ ଅପରିଚିତ କହୁଛ ?

ଶଶାଙ୍କ—"ରୁଦ୍ର" ମୋର ଅତି ପରିଚିତ ବାଲ୍ୟବନ୍ଧୁ, ବୋଲି ତୁମେ ଜାଣିଛ । କିନ୍ତୁ ତୁମେ ଜାଣିନା କଲ୍ୟାଣୀ, ଆମ ଦୁହିଁଙ୍କର ଏକାନ୍ତ ଅନ୍ତରଙ୍ଗତା ମଧ୍ୟରେ ଲୁଚି ରହିଛି କେଉଁଠି ଚରମ ଶତ୍ରୁତା···ଚରମ ବ୍ୟବଧାନ ।

କଲ୍ୟାଣୀ— ବ୍ୟବଧାନ !!

ଶଶାଙ୍କ— ହଁ କଲ୍ୟାଣୀ ! ଆମର ନିବିଡ଼ ବନ୍ଧୁତା ମଝିରେ ଅଛି ଗୋଟାଏ ଇତିହାସ, ଯାହା ଆମର ଆନ୍ତରିକତା ଭିତରେ ଗଢ଼ି ଦେଇଥିଲା ଏକ ସୁଦୃଢ଼ ପ୍ରାଚୀର । ସେ ଏକ ଚିରନ୍ତନ ଦ୍ୱନ୍ଦ୍ୱ । ସେ ଦ୍ୱନ୍ଦ୍ୱ ଆଉ କିଛି ନୁହେଁ କଲ୍ୟାଣୀ···ସେ ଦ୍ୱନ୍ଦ୍ୱ ଆଦର୍ଶର ।

କଲ୍ୟାଣୀ—ଆଦର୍ଶର ?

ଶଶାଙ୍କ—ହଁ । ଦୁଇଟି ବିପରୀତ ଆଦର୍ଶର ସେ ଦ୍ୱନ୍ଦ୍ୱ ( Pause ) ଧୀର୍ଘ ଗୁଳିଏ ବର୍ଷ ତଳେ···କ୍ରୀଡ଼ାଚପଳ ସ୍କୁଲ ଜୀବନ ଗୁଡ଼ି ଦୁହେଁ କଲେଜ ଶିକ୍ଷା ପାଇଁ ଯାଉ ମହାନଗରୀ କଲିକତା । ସେଇଠି ଯୁକ୍ତିତର୍କ, ଆଳାପ ଆଲୋଚନା ଭିତରେ ପାର୍ଥକ୍ୟ ହୋଇ ଗଢ଼ି ଉଠେ ଦୁଇଟି ପୃଥକ୍ ଆଦର୍ଶବାଦର ଦ୍ୱନ୍ଦ୍ୱ ! ରୁଦ୍ରର ଆଦର୍ଶ, ନିଜେ ଜୀବନରେ ବଡ଼ ହେବା ନୁହେଁ···ଅନ୍ୟ ପାଇଁ ବଡ଼ କିଛି କରିବା । ଯଥା—ଦେଶ, ଜାତି, ବ୍ୟକ୍ତି ପାଇଁ ଏଇ ହେଉଛି ବଡ଼ କଥା । ମୁଁ କିନ୍ତୁ ଥିଲି ଠିକ୍ ବିପରୀତ ମତବାଦୀ ! ଅର୍ଥାତ୍ ନିଜେ ବଡ଼ ହେବା ଜୀବନର ସବୁଠାରୁ ବଡ଼ କାମ୍ୟ । ମୋ ଜୀବନରେ ଥିଲା ଅର୍ଥର ଅସୀମ ପ୍ରୟୋଜନ, କିନ୍ତୁ ରୁଦ୍ର ମତରେ ଅର୍ଥ କେବଳ ଜୀବନରେ ଅନର୍ଥର ସୃଷ୍ଟି କରେ । ଏଇ ଦୁଇଟି ଭିନ୍ନ ଆଦର୍ଶକୁ କେନ୍ଦ୍ର କରି ଗଢ଼ି ଉଠିଲା ମତଦ୍ୱୈଧ । ଶେଷରେ ମତ ଅଲଗା ହେଲା ଆଉ ପଥ ବି ।

କଲ୍ୟାଣୀ—ଏଇ କଥାରୁ······

ଶଶାଙ୍କ – ହଁ କଲ୍ୟାଣୀ, ଏଇ ସାମାନ୍ୟ କଥାରୁ ସୃଷ୍ଟି ହେଲା ବିଭେଦ । ଜଡ଼ବାଦୀ ଆଉ ବସ୍ତୁବାଦୀ ହିସାବରେ ମୁଁ ହେଲି ବିଜ୍ଞାନର ଛାତ୍ର । ମୋର ଉଚ୍ଚ ଆଶାକୁ ସଫଳ କରିବାକୁ ଯେଉଁ ଅସୀମ ଅର୍ଥର ପ୍ରୟୋଜନ, ତା କେବଳ ଏଇ ପଥରେ ଆସିବା ସମ୍ଭବ ବୋଲି ଦୂରଦୃଷ୍ଟି ମୋର ଥିଲା ।

କଲ୍ୟାଣୀ—ଆଉ ରୁ ଦ୍ର ଚୌଧୁରୀ ?

ଶଶାଙ୍କ ହଁ, ରୁଦ୍ର ତା'ର ବିରାଟ ଆଦର୍ଶ ନେଇ ଯୋଗ ଦେଲା Sanskrit College ରେ ।

କଲ୍ୟାଣୀ—ସଂସ୍କୃତ କଲେଜରେ ?

ଶଶାଙ୍କ ତା ମତରେ ଏ ପ୍ରାଚୀନ ଗ୍ରନ୍ଥ ମଧ୍ୟରେ ଲୁଚି ରହିଛି ଏ ଦେଶର ଅମୂଲ୍ୟ ରତ୍ନକୋଷ । ଅଯତ୍ନରେ, ଅବହେଳାରେ ଧୂଳିରେ ଲୋଟୁଛି । ତା'ର

ପୁନରୁଦ୍ଧାର ଏକାନ୍ତ ପ୍ରୟୋଜନ । ମୁଁ ବୁଝି ପାରେନା କଲ୍ୟାଣୀ, ତା'ପର ଜଣେ ମଧ୍ୟବିତ୍ତ ଶ୍ରେଣୀର ନିଃସ୍ୱ ଦରିଦ୍ର ଗୃହସ୍ଥ ମନରେ କାହିଁକି ଜାଗିଲା ଏପରି ଗୋଟାଏ ଖିଆଲ । ଯେଉଁଥିପାଇଁ ସାରା ଜୀବନ ଖାଲି ଗୋଟାଏ ଆଦର୍ଶ ପଛରେ ଦୌଡ଼ି ଦୌଡ଼ି ସେ ହେଲା କ୍ଲାନ୍ତ, ଅବସନ୍ନ ।

କଲ୍ୟାଣୀ ତା ପରେ ?

ଶଶାଙ୍କ ଭିନ୍ନ ପଥରେ ବହିଗଲା ଦୁଇଟି ଜୀବନ ସ୍ରୋତ । କର୍ମକ୍ଲାନ୍ତ ପ୍ରତି ସନ୍ଧ୍ୟାରେ ମୁଁ ନିଜକୁ ହଜାଇ ଦେଉଥିଲି ମହାନଗରୀର କଳହାସ-ମୁଖର ବିଳାସ ପ୍ରବାହରେ···ଆଉ ରୁଦ୍ର ଲମ୍ଫ ଦେଉଥିଲା ଗଦା ଗଦା ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ପୁସ୍ତକ ଆଉ ଶିଳାଲିପି ଭିତରେ ।

କଲ୍ୟାଣୀ—ତା'ପରେ ଆଉ ଦେଖା ହୋଇନି ?

ଶଶାଙ୍କ—ହଁ ଦେଖା ହେଉଛି, କିନ୍ତୁ ଖୁବ୍ କମ୍ ସମୟ ପାଇଁ । ମୋର ଯଥେଷ୍ଟ ସମୟ ଥିଲେ ବି ରୁଦ୍ରର ସମୟ ଆଉ ଆଗ୍ରହ ଥାଏ ଖୁବ୍ କମ୍ । ଆଉ ମୁଁ ମଧ୍ୟ ରୁଦ୍ରର ବିରାଟ ପୋଥିଗଦା ଭିତରେ ନିଜକୁ ଶ୍ୱାସରୁଦ୍ଧ ଅନୁଭବ କରେ । କ୍ରମେ କ୍ରମେ ଦୁହେଁ ଦୂରେଇ ଗଲୁ । ଶେଷରେ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହେଲୁ ।

କଲ୍ୟାଣୀ—ତା'ପରେ ?

ଶଶାଙ୍କ—ଗୃହସ୍ଥ ଜୀବନର କେତୋଟି ବର୍ଷ ପରେ ତପସ୍ୟା ଶେଷ ହେଲା । ବାପାଙ୍କର ବ୍ୟବସାୟର ସାମାନ୍ୟ ମୂଳଧନ ଓ ସରକାରୀ ସାହାଯ୍ୟ ନେଇ ନିଜ ଚେଷ୍ଟାରେ ମୁଁ ଗଢ଼ି ତୋଳିଲି ଏଇ ସିମେଣ୍ଟ କାରଖାନା, ଯାହା କି ଆଜି ଲକ୍ଷ ଲକ୍ଷ ଟଙ୍କାର ମୂଳଧନ ହୋଇ ସଗୌରବେ ମଥା ଟେକିଛି । ମୋର ଆଶା, ଆକାଂକ୍ଷା, ସ୍ୱପ୍ନ ସାର୍ଥକ ହୋଇଛି ।

କଲ୍ୟାଣୀ—ଆଉ ଚୌଧୁରୀ ?

ଶଶାଙ୍କ—ହଁ, ରୁଦ୍ର ବି ଭଲ ସୁନାମ ନେଇ ପାସ୍ କଲା ବିଶ୍ୱବିଦ୍ୟାଳୟରୁ । ଇଚ୍ଛା କରିଥିଲେ ସେ ହୁଏତ ଭଲ ସରକାରୀ ଚାକିରୀ ପାଇ ପାରିଥାଆନ୍ତା । କିନ୍ତୁ ପୁଣି ସେ ଭୁଲ କଲା ।

କଲ୍ୟାଣୀ—ପୁଣି କ ଭୁଲ୍ ?

ଶଶାଙ୍କ—କିଛିଦିନ ସେ ଯୋଗଦେଲା ବାପୁଜୀଙ୍କ ସତ୍ୟାଗ୍ରହରେ, ଜେଲ୍ ଗଲା, ଅନଶନ କଲା, ମାଡ଼ ଖାଇଲା । ତା'ର କିଛି ଦିନ ପରେ ଗାଁକୁ ଫେରି ଏଠି ଗୋପବନ୍ଧୁଙ୍କ ଆଦର୍ଶରେ ଏକ ଆଶ୍ରମ ସ୍କୁଲ ପ୍ରତିଷ୍ଠା କଲା । Really a disgrace, speciality for a genious like Rudra was entirely ruined and con.pletely spoiled.

କଲ୍ୟାଣୀ—କିନ୍ତୁ ଏଥିରେ ତାଙ୍କର ଦୋଷ କଅଣ ?

ଶଶାଙ୍କ ଦୋଷ ନୁହେଁ କଲ୍ୟାଣୀ ! ଏଇଟା ଗୋଟାଏ ମସ୍ତବଡ଼ crime । ମଧ୍ୟବିତ୍ତ ସଂସାରରେ ଜନ୍ମ ହୋଇ, ଅର୍ଥ ଉପାର୍ଜନର ସବୁ ସାମର୍ଥ୍ୟ ଥାଇ ଯିଏ ଜୀବନର ଉନ୍ନତି ଆଶା କରେନା, ତାକୁ ଆଜିର ଦୁନିଆ ନିର୍ବୋଧ ପାଗଳ ଛଡ଼ା ଆଉ କିଛି କହିବ ନାହିଁ । ଏମିତି ପାଗଳାମି କରି ରୁଦ୍ରର ପ୍ରତିଭା ନଷ୍ଟ ହୋଇଛି । ଆଉ ଯେମିତି ନଷ୍ଟ ହେବାକୁ ଯାଉଚି ଭାନୁ ଶଙ୍କର । ଏମାନଙ୍କର ଆଦର୍ଶକୁ ମୁଁ ଘୃଣାକରେ, ଏମାନଙ୍କୁ ଦେଖିଲେ ମୋର ଦୟା ହୁଏ । ଆଦର୍ଶବାଦୀ ରୁଦ୍ରର ପୁଅ ଭାନୁଶଙ୍କର ଅମଣିଷ । ତା ହାତରେ ମାଳାକୁ ଟେକି ଦେଇ ମୁଁ ସୁଖୀ ହୋଇ ପାରିବିନି । ତା ପାଇଁ ମୁଁ ଖୁବ୍ ଭଲ ଜାଗା ଠିକ୍ କରିଛି । ମାଳା ମୋର ରାଜରାଣୀ ହେବ ।

( ପଶୁପତି ପ୍ରବେଶ କରି ) ଆଜ୍ଞା···

ଶଶାଙ୍କ—କିଏ ?

ପଶୁପତି—ଆଜ୍ଞା, ମୁଁ ଆଜ୍ଞା ।

ଶଶାଙ୍କ—କଅଣ କିଛି କହିବାର ଅଛି ?

ପଶୁପତି—ହଁ ଆଜ୍ଞା, ବହୁତ କିଛି କହିବାର ଅଛି । ଆଜ୍ଞା, ଦେଇଙ୍କ ବାହାଘର ବିଷୟରେ ଭଲଲୋକ ଆସିଛନ୍ତି ।

ଶଶାଙ୍କ—ଓ, ସେମାନେ ଆସିଗଲେଣି ନା ? ବାହାର ଘରେ ସେମାନଙ୍କୁ ବସାଇଛୁ ?

ପଶୁପତି—ନାହିଁ ଆଜ୍ଞା ।

ଶଶାଙ୍କ  Hopeless କୋଉଠିକାର···ତାଙ୍କୁ ବାହାରେ ଛୁଡ଼ା କରାଇ······

ପଶୁପତି—ଯାଉଛୁ ଆଜ୍ଞା ।

ଶଶାଙ୍କ--Get out ( ପଶୁର ପ୍ରସ୍ଥାନ ) ବୁଝିଲ କଲ୍ୟାଣ ଚନ୍ଦ୍ରଗଡ଼ରୁ ଲୋକ ଆସିଛନ୍ତି । ମୁଁ ଯାଏଁ ସିଆଡ଼େ ଦେଖେ, ହଁ ତମେ ଟିକଏ ବୁଝାଇ ସୁଝାଇ ମାଲାର ମନଟାକୁ ଠିକ୍ କରିଦିଅ । ବୁଝିଲ !  ( ପ୍ରସ୍ଥାନ )

ଜଗା—ଦେଖିଲଣି ସାନ୍ତାଣି, ଦେଖିଲଣି ?

କଲ୍ୟାଣୀ—କ'ଣ ଦେଖିଲଣି ?

ଜଗା  ହେଇ ଦେଖ !

କଲ୍ୟାଣୀ—କ'ଣ ସେଇଟା ?

ଜଗା—ଜୋଇସାନ୍ତଙ୍କ ଫଟ ।

କଲ୍ୟାଣୀ—ଫଟ ?

ଜଗା—ହେଇପରି ସେଇ ଭଲନୋକ ନେଇ ଆସିଥିଲେ । ଦେଖନା କେମିତି ରଜାମିତି ଚେହେରା ! ନିଅ, ଦେଈଙ୍କି ଦେଖାଇଦିଅ ।

କଲ୍ୟାଣୀ—( ଫଟନେଇ ପ୍ରସ୍ଥାନ )

ପଶୁପତି—ଅରେ ଏଠି କଣ ଠିଆ ହୋଇଚୁ ବା ? ସେଣେ ପରା ଭଦ୍ରଲୋକ ଖୋଜୁଚନ୍ତି !

ଜଗା—କାହିଁକ ଖୋଜୁଛନ୍ତି, କଣ ମୁହଁ ଦେଖିବେ ? ପାଣି ଢାଳ, ଗାମୁଛା, ପାନ, ସରବତ୍ ସବୁପରା ଦେଇଆସିଛୁ !

ପଶୁପତି—ହେଲେ ସେଠି ସିନା ସବୁବେଳେ ରହିଲେ ଗୋଟାଏ କଥା । ମୋ ଉପରକୁ ବାବୁ ପରା ସବୁବେଳେ ଚଢ଼ୁଚନ୍ତି । ତୁ ଟିକେ ଯା ସେଇଠି ଥିବୁ । ଯେତେବେଳେ ଯାହା ଦରକାର ହେବ, ମୋତେ କହିବୁ ।

ଜଗା—ମୁଁ ପରା ଗୋଟାଏ କାମରେ ଆସିଛୁ !

ପଶୁପତି—କି କାମରେ ଆସିଛୁ ?

ଜଗା—ଜୋଇଁ ସାଆନ୍ତଙ୍କର ଫଟ ନେଇ ସାଆନ୍ତାଣୀଙ୍କ ପାଖକୁ ଆସିଛୁ ।

ପଶୁପତି—କାହିଁ ଦେଖେ···ଦେଖେ ?

ଜଗା—ମଲ, ଏଠି କଣ ଅଛୁ ? ସାନ୍ତାଣୀ ନେଇ ଯାଇଛନ୍ତି ପରା !

ପଶୁପତି—ହଉ, ତୁ ଦେଖିଛୁ ? ଜହ୍ନଲୁ କେମିତି ଦେଖିବାକୁ ?

ଜଗା ଦିଜଣଙ୍କୁ ବସାଇ ଦେଲେ ଠିକ୍ ଯେମିତି ହର-ପାର୍ବତୀ । ଖାସା ଯୋଡ଼ି ଏକା, ଜଗନ୍ନାଥଙ୍କ ଘୋଟକ ।

ପଶୁପତି—ଆଉ ଘର ଦୁଆର ?

ଜଗା—ସେ କଥା ଆଉ କହିବାକୁ ଅଛି ? ସମ୍ପତ୍ତି ବାଡ଼ି ଅକଳନ୍ତ । ଗୋଟିଏ ବୋଲି ପୁଅ । ରଜାଘର ଜାଣିବ ।

ପଶୁପତି—ଆହା ହା । ତାହାହେଲେ ଯା ହେଉ, ଦେଈ ଆମର ସୁଖରେ ରହିବେ । ମୁଁ ଜାଣେ ପରା, ଦେଈ କଣ ଏମିତି ସେମିତି ଜାଗାରେ ପଡ଼ିବେ ? ତାଙ୍କ ଲାଗି ବିଧାତା ତ ଘର ବର ଠିକଣା କରିଥିବେ ।

ଶଶାଙ୍କ—( ପ୍ରବେଶ କରି ) ବାହାରେ ଭଦ୍ରଲୋକମାନେ ବସିଛନ୍ତି । ଆଉ ଏଠି ଗପ କରିବାକୁ ବେଶ୍ ବେଳ ମିଳୁଛି, ନାହିଁ ? ହୋପ୍‌ଲେସ୍ କୋଉଠିକାର ।

ପଶୁପତି—ନା ମୁଁ କଣ କହୁଥିଲି ନା···

ଜଗା—ସେ କହୁଥିଲେ ଦେଈଙ୍କ ନାଗି ବିଧାତା···

ଶଶାଙ୍କ—Shut up, ଯାଅ ତୁମେ, ବାହାର ଯାଅ ।

କୁ( ପଶୁ ଡରି ଡରି ବାହାରିଗଲା )

ଶଶାଙ୍କ—ଜଗା ! ଭିତରକୁ ଯାଇ ସାନ୍ତାଣୀଙ୍କୁ ଡାକ ଦେ । (ଜଗାର ପ୍ରସ୍ଥାନ)

କଲ୍ୟାଣୀ—( କଲ୍ୟାଣୀ ପ୍ରବେଶ କଲେ )

ଶଶାଙ୍କ—ବୁଝିଲ କଲ୍ୟାଣୀ, ସବୁ ଠିକ୍ କରି ଆସିଲି । ଆମ ତରଫରୁ ମୁଁ ଜବାବ ପକ୍‌କା କରିଦେଇଛି ।

କଲ୍ୟାଣୀ—କୋଉ କଥା ?

ଶଶାଙ୍କ—ଏହି ମାଳାର ବାହାଘର ବିଷୟରେ । ଏଇ ଆମର ରତ୍ନଗଡ଼ର ମାନସିଂହ ଘରେ, ମୁଁ ଜବାବ ଦେଇ ଆସିଲି । ମାଳାକୁ ଖବରଟା ଦେଇ ଦିଅ । ମୁଁ ଯାହା କରିଛି ଭବିଚନ୍ତି କରିଛି । ମାଳା ସୁଖୀ ହେବ, ଏଇ ମୋର କାମନା ।

କଲ୍ୟାଣୀ—( ଚିଠି ଫଟଟି ଫୋପାଡ଼ି ଦେଇ )

ଶଶାଙ୍କ— କଲ୍ୟାଣୀ ?

କଲ୍ୟାଣୀ—ହଁ, ଏଇ ତମ ଝିଅର ଇଚ୍ଛା ।

ଶଶାଙ୍କ—ମାଳାର ? ଏଇଆ ମାଳାର ଇଚ୍ଛା ? ମୋ ବିରୁଦ୍ଧରେ ବ ଧାର ଏଇଆ ଇଚ୍ଛା ? ଓଃ ବୁଝିଲି, ଆଜି ଭାନୁଶଙ୍କରର ସ୍ମୃତି ତା ମନରୁ ଲିଭି ନାହିଁ । ଭାନୁକୁ ତାକୁ ଭୁଲି ଯିବାକୁ ହେବ । ଏ ବଂଶର କୌଣସି ଝିଅ ତା ବାପର ବିରୁଦ୍ଧରେ ମଥା ଟେକି ଛିଡ଼ା ହୋଇନି । ଆଉ ଆଜି ବି ତାହା ହେବାକୁ ମୁଁ ଦେବି ନାହିଁ । ( କଲ୍ୟାଣୀ ଚାଲି ଯାଉଥିଲେ )

ଶଶାଙ୍କ—ଛିଡ଼ା ହୁଅ, କଲ୍ୟାଣୀ !

କଲ୍ୟାଣୀ—କଣ ?

ଶଶାଙ୍କ—କହିଯାଅ କଅଣ ତମେ ଚାହଁ ?

କଲ୍ୟାଣୀ—ମୁଁ କଣ ଚାହେଁ ? କାହିଁକି ମୋତେ ସେ କଥା ପଚାରିଲ ? ଏ ଘରେ କଅଣ ମୋର ଅଧିକାର ? ମୋର ପୁଣି ଗୋଟାଏ ମତ ?

ଶଶାଙ୍କ—ହଁ କଲ୍ୟାଣୀ ! ତମେ ଏ ଘର ବୋହୂ । ତମେ କଦାପି ଏ ଘରର ଅକଲ୍ୟାଣ କାମନା କରିପାରିବ ନାହିଁ । ସେଥିପାଇଁ ମୁଁ ଚାହେଁ ତୁମର ମତ ।

କଲ୍ୟାଣୀ—ମୋର ମତ ? ବେଶ୍ ଶୁଣ, ରକ୍ତ ଦେଇ ଯାହାକୁ ଗଢ଼ିଛି, ଯାହାର ଅଳଅର୍ଦ୍ଦଳିକୁ ଏତେ ଦିନ ସହି ଆସିଛି, ଆଜି ତା ଆଖିରେ ଲୁହ ମୁଁ ଦେଖିପାରିବି ନାହିଁ ।.

ଶଶାଙ୍କ— କଲ୍ୟାଣୀ ! କଣ ତମେ କହିବାକୁ ଚାହଁ ?

କଲ୍ୟାଣୀ—ହଁ, ମାଳା ଯାହା ଚାହେଁ ମୁଁ ବି ସେଇଆ ଚାହେଁ ।

ଶଶାଙ୍କ—ତମେ ଭୁଲି ଯାଅନା କଲ୍ୟାଣୀ, ତମେ ଏ ଘରର ବୋହୂ ।

କଲ୍ୟାଣୀ—ଆଉ ଇଆ ବି ମୁଁ ଭୁଲି ପାରିବି ନାହିଁ ଯେ, ମୁଁ ବି ମାଳାର ମାଆ ।

ଶଶାଙ୍କ—କଲ୍ୟାଣୀ, ଶଶାଙ୍କ ପଟ୍ଟନାୟକ ଆଜିଯାଏ କାହାରି ଆଗରେ ମୁଣ୍ଡ ନୁଆଁଇ ନାହିଁ । ତାର ଆଦେଶକୁ ଆଶୀର୍ବାଦ ପରି ସମସ୍ତେ ବିନା ପ୍ରତିବାଦରେ ଚିରଦିନ ସ୍ୱୀକାର କରି ନେଇଚନ୍ତି । ଆଜି ତାର ଝିଅ 'ମାଲା' ଯଦି ସେ କଥା ନ ବୁଝେ, ଆଉ ତୁମେ ମୋର ସ୍ତ୍ରୀ ହୋଇ ଯଦି ସେ କଥା ନବୁଝ, ତାହାହେଲେ ମୁଁ କେବେ ମୋର ସିଦ୍ଧାନ୍ତରୁ ଟଳିବି ନାହିଁ ।

କଲ୍ୟାଣୀ—ବେଶ୍, ତାହା ହେଲେ ମୋତେ କାହିଁକି ପଚାରିଲ ? କଣ ଦରକାର ଥିଲା ? ତମର ଯା ଇଚ୍ଛା କରିଯାଅ । ମୁଁ ଏ ଘରର କେହି ନୁହେଁ ।

( କଲ୍ୟାଣୀ ପ୍ରସ୍ଥାନ )

ଶଶାଙ୍କ—କଲ୍ୟାଣୀ ! କଲ୍ୟାଣୀ ! ଆଚ୍ଛା—

—ଆଲୋକ ଲିଭିଗଲା—




ଶ୍ରୀକାନ୍ତର ଡ୍ରଇଂ ରୁମ୍ । ସମସ୍ତ—ରାତି ! ଶ୍ରୀକାନ୍ତ ଓ ମ୍ୟାନେଜର କଥାବାର୍ତ୍ତା ହେଇ ହେଇ ଆସୁଥିଲେ, ଶ୍ରୀକାନ୍ତର ହାତରେ ରାଇଫଲ ଓ ଦେହରେ ଶିକାରର ପୋଷାକ ]

ଶ୍ରୀକାନ୍ତ—ଆଉ କେତେ ଡେରି ହେବ ବୋଲି ତୁମେ ଆଶା କରୁଛ ମ୍ୟାନେଜର ?

ନିର୍ମଳ—ନାଇଁ, ଆଉ ବେଶିଦିନ ନୁହେଁ । ଏଇ ଦିନେ ଦୁଇଦିନେ ହୁଏତ···

ଶ୍ରୀକାନ୍ତ—ନାଇଁ, ଆଉ ବେଶି ଡେରିକଲେ ଚଳିବ ନାହିଁ । ବର୍ଷାଦିନ ଆଗରୁ ଆମକୁ Location shooting ଗୁଡ଼ାକ ଶେଷ କରିବାକୁ ପଡ଼ିବ ।

ନିର୍ମଳ—ବୁଝିଲି ସାର ।

ଶ୍ରୀକାନ୍ତ—ନା, ତମେ ଆଉ ଡେରି କରନା । ଅଳ୍ପ ଆଉ ପ୍ରଶାନ୍ତଙ୍କୁ ସେଠିକି ପଠାଇଦିଅ । ସେମାନେ ଗୋଟେ ସର୍ଭେ କରି Sight selection କରି ଆସନ୍ତୁ । ଆଉ ତପନ ଉପରେ ସୁଟିଂର ଇଉନିଟ୍ ଗୁଡ଼ି ଦିଅ ।

ନିର୍ମଳ—ମୁଁ ବି ସେଇକଥା ଭାବୁଛି ସାର୍ !

ଶ୍ରୀକାନ୍ତ—ଆଉ ତୁମେ ନିଜେ ଇଉନିଟ୍ ପାଇଁ Ration ତାଲିକାଟା କରିପକାଅ ।

ନିର୍ମଳ—ସେ ସବୁ ତ ସରିଯାଇଛି !

ଶ୍ରୀକାନ୍ତ– ସରିଯାଇଛି ନା, ଦିଉ, ନିର୍ମଳ ! ଅତନୁର ଖବର କ'ଣ ? ଏଥର କ୍ୟାମେରାର ଭାର ପୁରାପୁରି ତା ଉପରେ । ଅତନୁର Talent ଅଛି । ଏଥର ତାକୁ ସୁଯୋଗ ଦିଆଯାଉ । ଯଦି ଭଲ କରେ, Technicolour Photography training ପାଇଁ ତାକୁ ମୁଁ Hollyood ପଠାଇବା ପାଇଁ ଠିକ୍ କରିଛି ।

ନିର୍ମଳ—ଅତନୁର ହାତ ଉପରେ ମୋର ବିଶ୍ୱାସ ଅଛି ସାର୍ ।

ଶ୍ରୀକାନ୍ତ—ଆଉ ଅତନୁ ସେ ବିଶ୍ୱାସ ଅକ୍ଷୁଣ୍ଣ ରଖିବ ବୋଲି ମୋର ଆଶା ଅଛି ମ୍ୟାନେଜର ।

ନିର୍ମଳ—ମୁଁ ଏବେ ଆସୁଛି ସାର୍ ।

ଶ୍ରୀକାନ୍ତ—ହଁ, ତେବେ ଆସ ମ୍ୟାନେଜର । ଆଜି ମୋର ଟିକେ ଶିକାର ଯିବାର ପ୍ରୋଗ୍ରାମ ଅଛି । ଯାହା କହିଲି ସବୁ ଠିକ୍ କରିବ ।

ନିର୍ମଳ—ହଉ ସାର ! ( ପ୍ରସ୍ଥାନ )

ଶ୍ରୀକାନ୍ତ—ଭାନୁ, ଭାନୁ, ଆରେ ଗୋଟାଏ ହୋପ୍‌ଲେସ୍ । ଗଲୁ କୁଆଡ଼େ ? ଭାନୁ, ଭାନୁ ।

ଭାନୁ—( ଭିତରୁ ) ଯାଉଚିରେ ।

ଶ୍ରୀକାନ୍ତ—କଣ ତୋର କବିତା ଲେଖା ଶେଷ ହୋଇନି ?

ଭାନୁ—( ବନ୍ଧୁ ଧରି ପ୍ରବେଶ କଲା ) କିରେ କ'ଣ ? ଏ ସଂଧ୍ୟା ବେଳଟାରେ ପାଟିଟା କାହିଁକି କରୁଛୁ ?

ଶ୍ରୀକାନ୍ତ—( ବହିଟା ଦେଖି ) ଓଃ Philosophy of Omar Khayam ! ବାଃ ଚମତ୍କାର । ସ୍ତ୍ରୀ ଜାଗି 'ଚନ୍ଦ୍ରଶେଖର' ଆଉ 'ଓମର ଖାୟମ' ପଢ଼ିବା ଖୁବ ରୋମାଣ୍ଟିକ ! ନୁହଁରେ ଭାନୁ ?

ଭାନୁ—ଗୁଡ଼୍, ତୋ ଭଳିଆ ଲୋକ ଯିଏ Romance କୁ ମଣିଷ ମନର ପ୍ରଳାପ ବୋଲି ଭାବେ, ତାକୁ ସେ ସବୁ ରୋମାନସ୍ ବୁଝାଇବା ବୋକାମୀ ଛଡ଼ା ଆଉ କିଛି ନୁହେଁ ।

ଶ୍ରୀକାନ୍ତ—ସେସବୁ ବୋକାମୀ ହଜମ କଲାଭଳି ଧୈର୍ଯ୍ୟ ମୋର ନାହିଁ ।

ଭାନୁ—କୋଉଥିରେ ତୋର ଧୈର୍ଯ୍ୟ ଅଛି କହିଲୁ । ତୋର Daily ଗୋଟାଏ ଗୋଟାଏ ନୂଆ ପ୍ରୋଗ୍ରାମ । ଆଜି Outdoor Shooting କାଲି Indnor ତା ପରଦିନ ତୁଳି ଆଉ ରଙ୍ଗ, ନ ହେଲେ Picnic ଆଉ Boat Journeys. ଏଇ ସବୁ ତ ଚାଲିଛି !

ଶ୍ରୀକାନ୍ତ—ଚାଲିଛି ନୁହଁ ···ଚାଲିବ ଓ ଚାଲିଥିବ । ବୁଝିଲୁ ଭାନୁ, ତୁଳି ମୁନରୁ ହୁଏତ ରଙ୍ଗ ସରିଯିବ କିନ୍ତୁ ମୋ ମନରୁ ନୁହେଁ ।

ଭାନୁ—ଜୀବନର ବିଭିନ୍ନ ଅଭିଜ୍ଞତାର ରଙ୍ଗ କ'ଣ ଏମିତି ବଞ୍ଚି ରହିବ ଶ୍ରୀକାନ୍ତ ?

ଶ୍ରୀକାନ୍ତ—( ଶେଷପର୍ଯ୍ୟନ୍ତ ବଞ୍ଚେଇ ରଖିବାକୁ ଆପ୍ରାଣ ଚେଷ୍ଟା କରିବି ଭାନୁ ।

ଭାନୁ - କିନ୍ତୁ ହଠାତ ତ ଏଥିରେ ପୂର୍ଣ୍ଣଚ୍ଛେଦ ଆସିପାରେ !

ଶ୍ରୀକାନ୍ତ—ନା ଭାନୁ, ମୋ ଜୀବନରେ Coma, Semicolon, Interrogation ଆସିପାରେ କିନ୍ତୁ Fullstop ନୁହେଁ ।

ଭାନୁ—Bachelor life ରେ ଏମିତି ପରିକଳ୍ପନା ଅନେକେ କରିଥାନ୍ତି, କିନ୍ତୁ···

ଶ୍ରୀକାନ୍ତ—କିନ୍ତୁ ଶେଷ ପର୍ଯ୍ୟନ୍ତ ହାରିଯାଆନ୍ତି ସମସ୍ତେ, ଏଯ୍ଯା ନା ? ମନେରଖ ଭାନୁ ! ଯେଉଁମାନେ ଏଇ Experiment ରେ ହାରି ଯାଆନ୍ତି, ସେମାନଙ୍କ ତାଲିକା ଭିତରେ ମୁଁ ନାହିଁ ।

ୱାନୁ—ଜାନକି ବେଶ୍ ଲାଗୁଛୁ ତୋର ଏବ Dialogue. ଦେଖାଯାଉ, ମନକୁ କେତେଦିନ ସ୍ଥିର ରଖିପାରିବୁ ।

ଶ୍ରୀକାନ୍ତ—ଅସ୍ଥିର ହେବାର କାରଣ ତ କିଛି ନାହିଁ ଭବିଷ୍ୟତରେ ଦେଖିନ୍ତୁ ।

ୱାନୁ—ଦେଖୁଛୁ ବାହାହେବା ପାଇଁ ଦାଦାଙ୍କର ଯେଉଁ ବାରମ୍ବାର ତାଗିଦ୍···,

ଶ୍ରୀକାନ୍ତ—ଓଃ ଏଇ ସଚ୍ଚିଦାଦାଙ୍କ କଥା କହୁଛୁ ? ସେ ତ ସେମିତି ସବୁଦିନେ କହନ୍ତି । ମୁଁ କିନ୍ତୁ ମୋଟେ ଧରା ଦଉନି ।

ୱାନୁ—ତୁ ସିନା ଧରା ଦଉନୁ । ହେଲେ ମତେ ଧରା ପକେଇବୁ । ସେ ପରା ସବୁବେଳେ ମୋ ସାଙ୍ଗରେ ଲଗେଇଛନ୍ତି !

ଶ୍ରୀକାନ୍ତ—ତୁ ସେସବୁରେ କାନ ଦେ'ନା ୱାନୁ ।; ମୁଁ ଏକା ଥିଲି, ତୁ ଆସିଲୁ, ଏଥର ମୋର କିଛି ଚିନ୍ତା ନାହିଁ । ଆସିଲୁ···ଆ ଯିବା ।

ୱାନୁ—କୁଆଡ଼େ ?

ଶ୍ରୀକାନ୍ତ—ଯାହା କାଲି ପରା କହିଥିଲି···ଭୁଲିଗଲୁ ? ମୁଁ ଦେଖୁଚି ତୁ ସବୁ ପ୍ରୋଗ୍ରାମ୍ ମାଟି କରିଦେବୁ ।

ୱାନୁ—ପ୍ରୋଗ୍ରାମ୍ ?

ଶ୍ରୀକାନ୍ତ—ହଁ, ଏଇ ସୁଟିଂ ପ୍ରୋଗ୍ରାମ ।

ୱାନୁ—ସୁଟିଂ !

ଶ୍ରୀକାନ୍ତ—ହଉ, ଏଥର ଏଇ କ୍ୟାଇଁ କୁଣିଆ ଡ୍ରେସ୍ ଛାଡ଼ି ପିସ୍ତଲ ନେଇ ବାହାରି ଆ । ନୂଆ ଜାଗା···Adventure ଟା ବଡ଼ Thrilling ହବ ।

ୱାନୁ—ୱାଇ, ତୋର ଏ Adventure ଗୁଡ଼ାକ ମୋ ମନରେ ଟିକିଏ ବି Thrill ଦେଇ ପାରେନା···ତାଛଡ଼ା ଏଇ ତ ଗୋଟିଏ week ହେଇନି ଚନ୍ଦିକା ଯାଇଥିଲୁ, ଫେର୍ ଆଜି······

ଶ୍ରୀକାନ୍ତ—ହଁ । ଆଜି······

ୱାନୁ—ଶ୍ରୀକାନ୍ତ !

ଶ୍ରୀକାନ୍ତ—କିଛି ଶୁଣିବନି···ତୁ ଆସିଲୁ ।
ଭାନୁ—ଶୁଣିବୁନି ତା ହେଲେ ?

ଶ୍ରୀକାନ୍ତ—ଏଡ଼େ ସୁନ୍ଦର ସିଗ୍ରେଲଟେ ତୋତେ Present କଲି, ସେଟା କ'ଣ ଘରେ ପଡ଼ି ପଡ଼ି କଲଙ୍କି ଧରିବ ? ଗୁଲ୍‌ନା···
ଭାନୁ—ବଡ଼ ହାଇଗ୍ରାଣରେ ପକାଇଲୁ ।

ସଚୀ—( ପ୍ରବେଶ ) କାହାକୁ ସେ ହାଇଗ୍ରାଣରେ ନ ପକାଉଛ କହିଲ ? ସମସ୍ତେ ତା ପାଇଁ ଜଳିପୋଡ଼ି ମରୁଛନ୍ତି । ହେଲେ ତା'ର କ'ଣ ଯାଏ ଆସେ ?
ଶ୍ରୀକାନ୍ତ—ଦାଦା !

ସଚୀ—ହଁ, ଦାଦା ଡାକରେ ତ ସୀମା ରହୁନି···ଘର ବାହାର ଫାଟିପଡ଼ୁଛି । ହେଲେ ଏ ଘରେ ଏ ଦାଦାର ପଦେ କଥା ରହୁଛି ?

ଶ୍ରୀକାନ୍ତ—କୋଉକଥା କିଏ ନ ରଖିଲା ?

ସଚୀ—ତମେ ଜାଣିନ ? ଏସବୁ ଦାୟିତ୍ୱ ମୁଁ କେତେଦିନ ମୁଣ୍ଡେଇ ବୁଲୁଥିବି ?

ଭାନୁ—ଜରେ, ଖୁବ୍ ବଡ଼ ବଡ଼ କଥା କହୁଥିଲୁ । ଏଥର ଦାଦାଙ୍କ କଥାରେ ଜବାବ୍ ଦେ···

ଶ୍ରୀକାନ୍ତ—ଆରେ ସେସବୁ କିଛି ନୁହେଁ । ମଝିରେ ସେ ଏମିତି ବକିବାକୁ ଟିକେ ଭଲ ପାଆନ୍ତି । ଆମର ଯିବା ଆ···

ସଚୀ—ହଁ, ଯିବୁନି କାହିଁକି···ଅସଲ କଥା ପଡ଼ିଲା, ରହିଲେ ଜବାବ ଦେବାକୁ ପଡ଼ିବ ।

ଭାନୁ—ଜରେ ! ଦାଦା କ'ଣ ଏମିତି ଦିନ ରାତି ବକୁଥିବେ ଆଉ ଆମେ ଶୁଣୁଥିବା ?
ଶ୍ରୀକାନ୍ତ—ତୁ କ'ଣ ତାଙ୍କ କଥା ଜାଣିନୁ ?
ଭାନୁ—ତୋଠୁଁ ବେଶି ଜାଣେ ।

ସଚୀ—ଆଚ୍ଛା ବାବା, ମୋ କଥାଗୁଡ଼ା ତାକୁ ସିନା ପିତା ଲାଗୁଛି, ତୁମେ ଟିକେ ବୁଝେଇ କହିଲ···ମତେ ଟିକେ କ'ଣ ଶାନ୍ତି ଦେବନି ?

ଭାନୁ—କରେ ଚୁପ୍ ହୋଇ ବସି ରହିଲୁ କଣ ? ଦାଦାଙ୍କ କଥା ଶୁଣୁନ ?
ଶ୍ରୀକାନ୍ତ—କୋଉ କଥା ?
ଭାନୁ—ବାହାଘର କଥା ।

ଶ୍ରୀକାନ୍ତ—ଦେଖୁଚ ଭାନୁ, ଦାଦାଙ୍କ ସାଙ୍ଗରେ ମିଶି ତୋ ମୁଣ୍ଡ ବ ଖରାପ ହୋଇ-
ଗଲାଣି ।

ସଚୀ—ତମ ଦାଦାଙ୍କ ଭିତରୁ ଯାହା ମୁଣ୍ଡ ଖରାପ ହେଉ ପଛେ ତମ ସାଙ୍ଗରେ ରହି
ମୋ ମୁଣ୍ଡ ଆଉ ଖରାପ କରି ପାରିବିନି । ଏଇ ନିଅ, ଫଟ ନିଅ···
ଛଟିନିଅ । ହଁ, ତମର ଏଥର ବୁଝାବୁଝି ହୁଅ ।

ଶ୍ରୀକାନ୍ତ—ଫୋଟ ? କାହାର ?

ସଚୀ—କେତେ କେତେ ଥରେ ଲେଖାଏଁ ମୁଁ କହିପାରିବିନି । ବାର ଜାଗାରୁ ବାର
ସମ୍ବନ୍ଧ ଆସୁଛି । ଗୋଟି ଗୋଟି କରି ବୁଝ, ଆଉ କୋଉଠି ପସନ୍ଦ ହଉଚ
କହିଦିଅ । ( ଚାଲିଗଲା )

ଶ୍ରୀକାନ୍ତ—ଆରେ ବାଃ···ମୋର ଧାରଣା ଥିଲା···ଏ ଦେଶରେ ଝିଅ ନାହାନ୍ତି !
ଭାନୁ—ନାହାନ୍ତି ?

ଶ୍ରୀକାନ୍ତ—ଅଛନ୍ତି ? ଦେଖୁନୁ ଭାଇ···ଝିଅ ଥିଲେ ଏ ଲାବଣ୍ୟବତୀ Role ପାଇଁ
ଜାବତୀୟ ଜାଗା ଖୋଜି ଖୋଜି ଶେଷରେ ଗୋଟାଏ କପ୍ଟିଭ୍ୟାସୁନ୍ଦରୀ
ପାଖରେ ମିଛଟାରେ ସମସ୍ତ ନଷ୍ଟ କରି ଏତେ ଖୋସାମତ କରିବାକୁ
ପଡ଼ିଥାନ୍ତା ? ଆରେ ସରକାର ଯେତେବେଳେ Family planning
ବିଷୟରେ ଏତେ ସଜାଗ, ସେତେବେଳେ ଏଇ ଝିଅଗୁଡ଼ାକ ଜନସଂଖ୍ୟା
ବଢ଼ାଇବାକୁ କମିତ ଉତ୍ସୁକ ଦେଖିଲୁ ? ଏମାନଙ୍କ ଭିତରୁ Art ପାଇଁ
କେତେଜଣ ଏମିତ ଆଗେଇ ଆସୁଛନ୍ତି ?

ଭାନୁ—ତୋର ଯୋଉ କଥା ?
ଶ୍ରୀକାନ୍ତ—କଥା ନୁହେଁ, ଏଥର କାମରେ ଦେଖିବୁ । ଆଚ୍ଛା ଭାଇ, ତୁ ଦେଖିଲୁ···
ଆମର ବିଷକନ୍ୟା ପାଇଁ ସ୍ତ୍ରୀ ଭିତରୁ କୋଉଟା Suitable ହବ ।

ଷାନୁ—ଏଗୁଡ଼ାକ ବିଷକନ୍ୟା ପାଇଁ ନୁହନ୍ତି···ଏଗୁଡ଼ାକ lifeର ।

ଶ୍ରୀକାନ୍ତ—Life ମୋର Screen ଏବଂ Screen ମୋର Life. ତାଛଡ଼ା ଏଇ 'ଶ୍ରୀ' ଟି, ସ୍ୱାକୁ ବାଦ୍ ଦେଲେ କାନ୍ତ ଆଉ କାହାର ହେବେ ?

ଷାନୁ ହଉ, ତୁ ବାଜେ କଥା ରଖ । ଆହା···କ ସୁଅରେ···କ ଆଖିରେ । ଷାଇ, Lipsଟା ଟିକିଏ ମୋଟା । ଆହା···କ ନାକ ? କ Eyebrow ?

( ହଠାତ୍ ମାଳାର ଫଟ ଦେଖି )

ଶ୍ରୀକାନ୍ତ—କଣ Select ହୋଇଗଲା ? ଆହା ହା, ଷାଇ Just a minute. ବାଃ, ଏଇ moodଟା ମୋର ଦରକାର ଥିଲା । Nice ··A document of human emotion.

ଷାନୁ—Congratu'ation, Really you are a jewel. ଆଜିପର୍ଯ୍ୟନ୍ତ ତୁ ମତେ ଫାଙ୍କି ଦେଇ ଆସିଥିଲୁ···ହେଲେ, ଆଜି ତୁ ମୋ Cameraକୁ ଫାଙ୍କି ଦେଇ ପାରିବୁନି । ତତେ ଏଇ ବିଷକନ୍ୟାର Hero ହବାକୁ ହବ । ଆରେ ବାଃ···Still you are maintaining that mood. ଗୋଟାଏ ମିନଟ୍···

ଶ୍ରୀକାନ୍ତ—କଣ ହେଉଛ, ଷାନୁ···ଆରେ ତୋ ଆଖିରୁ ଲୁହ ପୋଛିଦେବା ଅଧିକାର କ'ଣ ମୋର ନାହିଁ ? ପଥଭ୍ରଷ୍ଟ ମୁସାଫିର୍ ପରି ଆମର ପରିଚୟ କଣ ଚଲାବାଟୋଇର କ୍ଷଣିକ ସହାନୁଭୂତି ହୋଇ ରହିଯିବ ?

( କିଛିକ୍ଷଣ ଆଲୋକ ଲିଭିଯାଇ ପୁଣି ଜଳିଉଠିଲା )

ଷାନୁ—କାନ୍ତ ?
ଶ୍ରୀକାନ୍ତ—ନିର୍ମଳ ।
ନିର୍ମଳ—ମତେ ଡାକିଲେ ସାର ?
ଶ୍ରୀକାନ୍ତ—ହଁ, ତମେ ଷାନୁକୁ ନେଇ ରଘୁପୁର ବଙ୍ଗଳାକୁ ଚାଲିଯାଅ ।

ନର୍ମଳ – ଆଜ୍ଞା ସାର ?

ଶ୍ରୀକାନ୍ତ– ହଁ ଆଜ୍ଞା । ମୁଁ ଯାହା କହୁଛି କର ।

ନର୍ମଳ—ହଉ ସାର୍ ।

ଖନୁ—କାନ୍ତ !

ଶ୍ରୀକାନ୍ତ—ରୁ ଯା ।

ଶ୍ରୀକାନ୍ତ—ଦାଦା, ଦାଦା ! ଏତେଦିନ ମୁଁ ତମ କଥାରେ ଅବାଧ ହେଇଚ, ହେଲେ ଆଜ୍ଞା······

( ମାଳାର ଫଟଟି ସଚୀ ହାତକୁ ଦେଇ ଖଟ୍ ଖଟ୍ ହୋଇ ଉପରକୁ ଚାଲିଗଲ )

ସଚୀ—ଆରେ ନର୍ମଳ, ଖନୁ, ବାସୁଆ, ମହେନ୍ଦ୍ର ! ଆରେ କଏ କେଉଁଠି ଅଛ ? ଆଜଭଳ ଦିନରେ ଚୁପ୍ ହୋଇ ବସିଛ ? ଶଙ୍ଖ ବଜାଅ, ଆରେ ଶ୍ରୀକାନ୍ତ ପରା ଆଜ ବା'ହବା ପାଇଁ ଯାଉ ।

( ବାହାଘରର ବାଜା ବାଜୁଛୁ )

—ଅନ୍ଧାର—

## ଚତୁର୍ଥ ଦୃଶ୍ୟ

ସମୟ—ସକାଳ

[ ଶଶାଙ୍କର ଅନନ୍ଦ—ସୁଟକେଶ ବେଡ଼ିଂ ଧର କଟକ ଫେରଯାଉଛନ୍ତ ଲୁଲୁ—ପଛେ ପଛେ ପଶୁପତ ]

ପଶୁପତ—ଆଜ୍ଞା, ସ୍ୱା'ନା ଗୋଟାଏ କଥା ? ଆଜପରା ଦିନରେ ତମେ ଆପଣେ ଏ ଉଆସ ଛାଡ଼ି ଚାଲିଯିବେ ? ଦେଇଙ୍କ ବାହାଘରଟି ଆଜ ?

ଲୁଲୁ—ଯିବ ନାହିଁ ? I am cumpelled to go back. ପଣ୍ଡିତ ଯାହା ହେଲଣି ନ ଯାଇ ଆଉ ଗତ ନାହିଁ ।

ପଶୁପତ—ଆଜ୍ଞା କ'ଣ ଏମିତ ହେଇଚ ଯେ ? ଏ କ'ଣ ଆଜ ନୂଆ କଥା ?

ଲୁଲୁ—ନୂଆ କଥା ମାନେ ? What do you say ? I mean ତୁମେ କ'ଣ କହୁଚ ଯେ ମଝିରେ ମଝିରେ ଏମିତ ହୁଏ ?

ପଶୁପତ—ହଁ ଆଜ୍ଞା, ଏମିତ କ'ଣ, ସ୍ବାଠୁ ଆହୁରି ବେଶି, ହାତାହାତ ପର୍ଯ୍ୟନ୍ତ ଗୃଲ୍ଯାଏ । ଆଜ୍ଞା—ହେଇତନ ବାବୁ ! ବଡ଼ଲୋକଙ୍କର ମିଜାସଟା ଯେମିତ କଡ଼ା ସବୁ କଥାରେ ଅଶାନ୍ତ—ଭଲ କଲେ କହିବେ କାହିଁକି କଲ—ମନ୍ଦ କଲେ କହିବେ କାହିଁକି ନ କଲ । ଏ ମୁଣ୍ଡ ବାଳଗୁଡ଼ା ଖରାରେ ପାଚନ ଆଜ୍ଞା—ଏଇସବୁ ଦେଖିଶୁଣି, ଏଗୁଡ଼ା ଆସି ଝୋଟ ପାଲଟିବାକୁ ବସିଲଣି—ଖାଲି କ'ଣ ଗାଳି ? ବେଳେ ବେଳେ ଘୋଡ଼ା କୋରଡ଼ା ବ ଏ ପିଠି ସହିଛୁ ।

ଲୁଲୁ—( ଚମକି ) What ?? ମାନେ I mean horse's whip ?

ପଶୁପତ—ହଁ ଆଜ୍ଞା, ପିଠିରୁ ଗ୍ଷଲ ଗୁଡ଼ଯାଇଚ । ଆଉ ଆପଣ ଆଜ୍ଞା କ'ଣ ଏମିତ ଟିକେ କଥାରେ ବଡ଼ଂପଣ ଧରି ବାହାରଯିବେ ? ହଇହୋ ବାବୁ ! ପର ଦୁଆରେ ଗୃକସ୍ଗ କରି କଥା କଥାକୁ ଏତେ ଛଲ କଲେ ଚଳିବ ? ମନ କଲେ କେଡ଼େ କଥା, ନ ହେଲେ କିଛୁ ନୁହେଁ; ମୁଁ ଦେଖୁଚ ଆପଣ ଆଜ୍ଞା ନହାତ ମାଇଚଅା, ଗୃଲନ୍ତୁ···ଭିତରକୁ ।

ଲୁଲୁ—Impossible, I am not a dog like you. I mean ସେପରି ମାଡ଼ଗାଳି ଖାଇ ଏଠି କୁକୁରପରି ରହିପାରିବନି ।

ପଶୁପତ—ହଁ ହେ—କିଏ ଆଉ ଦୁନଆରେ କୁକୁର ନୁହେଁ ଯେ···ଅଇଁଠା ପତର ଭାତ ମୁଠେ ପାଇଁ ସମସ୍ତେ କୁଁ କୁଁ କରି ଲାଙ୍ଗୁଡ଼ ହଲେଇଦବା କଥା ନା । ହେଇ ହେଇ ଆମେ ଏବେ ଦେଶୀ କୁତ୍ରି, ତମେ ନ ହେଲେ ବଲେଇତ କୁକୁର···ଏଇଯା ତ ?

ଲୁଲୁ—Shut up you scoundrel, you are going to insul me……

ପଶୁପତି—ହଁ । ହଁ ।—ହଇଛେ ବାବୁ ! ତମେ ଏମିତି ଔଷଧ ଗ୍ଲାସରେ ଢାଳିଆ କାମୁଡ଼ୁଚ କାହିଁକି ? କହୋ, ବାବୁ ତମ ଉପରେ ରାଗି ଉଠିଲେ, ସେ◌ ଲଙ୍ଗୁଡ଼ କାକ ଆସି ଏଠି ମୋ ଉପରେ ଭେଁ ଭେଁ ହଉଚ କାହିଁକି ହୋ ? ହଉ, ନ ହେଲେ ନାହିଁ……ଥାଉ !

ଲୁଲୁ—Stop, stop your advice…no more, no more !

ପଶୁପତି—ହେଇଟିକ, ମୁଁ ମୂଳରୁ କହୁଚ ଫଟ୍‌ଫାଟ୍ ହଅନ ବୋଲି । .କଥା କହୁ ଭଲ ହଉନ—ଆରେ…କିଛୁ ନ କହୁଲାରୁ ମୁହଁ ବଢ଼ିଗଲାଣି ଏ ଦୁନିଆରେ ଭଲ ନାହିଁ…ହଉ ଯାଅ ହେ, ତମେ ତମର ଯା…

( ଯିବାକୁ ଉଦ୍ୟତ )

ଲୁଲୁ—Hallo, please listen me. ଏଇ ଲଗେଜଗୁଡ଼ାକ ଟିକେ……

ପଶୁପତି—ପିଠିରେ ବୋହିନେବି ? ସେ କାଳ ଗଲାଣି ମ, ଥରେ ନେଇଥିଲି ବୋଲି ମନକୁ ପାଇଯାଇଚ, ନାହିଁ ? ବୁଝିଲ, ସେମିତି କଥା ହୋଇଥିଲା ବୋଲି… ନ ହେଲେ ପଶୁପତି ତା' ବାପର ବୋଝ ଉଠାଏନ !

ଲୁଲୁ—Please excuse me, ଗୋଟାଏ ଲୋକ ବ୍ୟବସ୍ଥା କରିଦେଲେ……

ପଶୁପତି—ବ୍ୟବସ୍ଥା ? ( ବେଙ୍ଗ ଟେକୁ ଟେକୁ ) ବାହାଘରେ ତ ସମସ୍ତେ ବ୍ୟସ୍ତ ଆଉ ( କାନରେ ଥୋଇ ) ନେଇ ନଅନ୍ତୁ ଆଜ୍ଞା—ଆଉ କ'ଣ କରିବା ? ଓଟ ହେଇ କୁଜକୁ ବୋହିବାକୁ ଡର ? ନଅ…ନଅ !

ଲୁଲୁ—( ବେଙ୍ଗ ଫୋପାଡ଼ି ) You idiot !

ପଶୁପତି—ହଁ, ହଁ, ହଁ ।……ଦାମିକା ବେଙ୍ଗଟା ଆଜ୍ଞା—ଗୁଣି ବଗୁରି…

ଲୁଲୁ—( ଯିବାକୁ ଉଦ୍ୟତ )

ଜଗା —( ପ୍ରବେଶ ) ଆଣିଚ ଆଜ୍ଞା…

ପଶୁପତି—କଅଣ ଆଜ୍ଞା ?

ଜଗା—କେଉଁ···ଟି ।

ପଶୁପତି—ହଉ ଦେ ଦେ, ବାଟରେ ବୋଝ ବୋହି ବୋହି ବାବୁଙ୍କ ତଣ୍ଟି ଶୁଖିଗିବ···ଟୋପାଏ ପିଇ ଦିଅନ୍ତୁ ।

ଲୁଲୁ—No, I don't want anything.

ଜଗା—ଆଜ୍ଞା ଆଜ୍ଞା ଗ୍ରହାଟା···

ପଶୁପତି—ପିଇଦିଅ—ପିଇଦିଅ—ଉଷ୍ଣୁମ୍ ହେଇଚ···ଦିହକୁ ହିତ ହେବ ।

ଲୁଲୁ ନନ୍‌ସେନ୍‌ସ ! ( ଗ୍ରୁଲଗଲା )

ପଶୁପତି—ହା ତୋ ଜନମ······

ଜଗା—ଆଜ୍ଞା ଗ୍ରହାଟା···

ପଶୁପତି—ପିଇଦେ ନେ······

— ପରଦା —

## ପଞ୍ଚମ ଦୃଶ୍ୟ

[ ଗ୍ରାମପଥ । ସମୟ ଅପରାହ୍ଣ । ଭାନୁ ଗ୍ରୁଲିଚ ଚମକିତ ଭାବରେ—ଅନ୍ତରାଳରୁ ବଂଶୀସ୍ୱନ—ପଛରୁ ଡାକୁଛି ଭାଇଗ—ଗାଁର ଜଣେ ଲୋକ ]

ଭାଇଗ—ସା'ନ୍ତେ······

ଭାନୁ—( ଫେର ଗ୍ରହିଁଲା )

ଭାଇଗ—ଜୁହାର ସା'ନ୍ତେ···

ଭାନୁ—ତମେ ?

ଭାଇଗ ଚିହ୍ନିପାରୁ ନାହାନ୍ତି ଆଜ୍ଞା ? ମୁଁ ପରା ସା'ନ୍ତଙ୍କର କୋଠିଆ । ଘର ଏଇ ଗାଁରେ ।

ଭାନୁ—ହଁ ବୁଝିଲି, ତୁମକୁ ସେଇ ରହୁଗଡ଼ରେ ଦେଖିଥିଲି, ନାଁ ?

ଭାଇଗ—ହଁ ଆଜ୍ଞା ସେଇଠି ତ—ଏଇ ସା'ନ୍ତେ ଆଉ ଆପଣ ଶୀକାର କରିବାକୁ ବାହାରିଥିଲେ, ସେଇଦିନ ଆଜ୍ଞା···

ଭାନୁ—ହଁ, ମନେ ପଡ଼ିଲା, ତୁମ ନାଁଟା ଭାଇଗ ନା ? ହଁ, ମ୍ୟାନେଜରଙ୍କ ସାଙ୍ଗରେ ମୁଁ ଆସିଥିଲି···ଜରୁରୀ କାମ ଥିଲା ।

ଭାଇଗ—ଆଜ୍ଞା, କେଇଦିନ ରହିବେ ସା'ନ୍ତେ !

ଭାନୁ—ନା, ବେଶୀ ଦିନ ନୁହେଁ । ହୁଏତ ଖୁବ୍ ଶୀଘ୍ର ଫିରିବାକୁ ହେବ ।

ଭାଇଗ—ହଉ ଆଜ୍ଞା ! ଆସିଛନ୍ତି ଯେତେବେଳେ, ଏଇ ଗରିବ କୁଡ଼ିଆ ଆଡ଼େ ଟିକେ ପାଦ ପକେଇଲେ···

ଭାନୁ—ଆଚ୍ଛା ହଉ, ଯେବେ ସୁବିଧା ହୁଏ ଦେଖି ଯିବି । ସେଥିରେ କ'ଣ ଅଛି ?

ଭାଇଗ ସେଇଆ ହେଲା ଆଜ୍ଞା ! ସେଇ କଥା ପଦେ ଢେର ।

ଭାନୁ—ଆଚ୍ଛା ଭାଇଗ, ତମ ଗାଁର ଖବର କ'ଣ ?

ଭାଇଗ—ଗାଁ କଣ କହୁଛନ୍ତି ଆଜ୍ଞା, ମୁଁ କ'ଣ ଗାଁରେ ଥିଲି ? ମୁଁ ପରା ଏଇ କେଇଦିନ ହେଲା ଉଆସକୁ ଯାଇଥିଲି !

ଭାନୁ—ଉଆସକୁ ?

ଭାଇଗ—ହଁ, ଆଜ୍ଞା ! ସେ'ଠି କମ କାଣ୍ଡ କାରଖାନା ଲାଗିଛି ? ବନ୍ଧୁ ବାନ୍ଧବରେ ଘର ଫାଟି ପଡ଼ୁଛି । ଭୋଜି ଭାତରେ ସୁଅ ଛୁଟିଛି । ଭାଟ ଭିକାରୀଙ୍କୁ ଦାନ ଧରମ ଚାଲିଛି କାହିଁରେ କ'ଣ । ରଜାଘର କାରଖାନା ଆଜ୍ଞା···

ଭାନୁ—ରଜାଘର କାରଖାନା ?

ଭାଇଗ—ଯୋଉ ରୋଷଣୀ ଆଜ୍ଞା·····ଚନ୍ଦ୍ରଉଦଆ, ଗଡ଼ମା, ହାବେଲୀ, ରସକଦମ, ପଦ୍ମଚକ୍ରୀ କେତେ କ'ଣ ଭୁଲିଗଲିଣି । ରୋଷଣୀ ଜାଳିବାକୁ ରାତି ଅଣ୍ଟିଲାନି ପରା···ଏମିତି ଜାକ ଜମକରେ ବାହାଘର ଏ ଚକଡ଼ାରେ ଗୋଟାଏ ହେଲା ଆଜ୍ଞା···ଆଉ ଆଜ୍ଞା···ଆମ ଶୁଣିବାରେ ଏମିତି ବାହାଘର ଏ ଖଣ୍ଡ ମଣ୍ଡଳରେ ଆଉ ହେଇନି ।

ଭାନୁ—ବାହାଘର ?

ଭାଇଗ—ହଁ ଆଜ୍ଞା···ବାହାଘର ନୁହେଁ ଯେ, ଗୋଟାଏ ବୁହାଘର । ଖାଲି ତ ଜିନଷପତ୍ର ବୁହା ଚାଲିଚ ! ଆଜ୍ଞା ବଡ଼ଘର ବଡ଼ କଥା······

ଭାନୁ—ବଡ଼ଘର ?

ଭାଇଗ—ନୁହେଁ ଆଉ କ'ଣ·····ମିଲ୍ ମାଲିକ ଶଶିବାବୁଙ୍କ ଘରଟି···

ଭାନୁ—ଶଶିବାବୁ······

ଭାଇଗ—ହଁ ଆଜ୍ଞା·····ଏ ଅଳକାପୁର ଶଶାଙ୍କ ପଟ୍ଟନାୟକ ଘର···ଶୁଣି ନଥିବେ କି ଆଜ୍ଞା—ଆଉ ଝିଅଟି ଗୋଟିଏ ଗୁଡ଼ଳରେ ଗଢ଼ା—ଚମ୍ପାକଢ଼ିଟିଏ ତ···

ଭାନୁ—ତମେ କ'ଣ କହୁଚ, ମୁଁ ବୁଝିପାରୁନ······

ଭାଇଗ—ଆଜ୍ଞା···ଆଉ କାହା କଥା···ସେଇ ସା'ନ୍ତଙ୍କ କଥା···।

ଭାନୁ—କାହାର ? ଶ୍ରୀକାନ୍ତ···

ଭାଇଗ—ସବୁ ତ ଜାଣିଛନ୍ତି ଆପଣ······ଆଜ୍ଞା ଆପଣଙ୍କୁ କାହିଁ ସେଠି ଦେଖିଲିନ ! ସା'ନ୍ତଙ୍କର ଏତେ ଆପଣାର ହେଲେ ଆପଣ···ହଁ କିଛି ଜରୁରି କାମ ଥିବ !

ନର୍ମଳ—( ନେପଥ୍ୟ ଭାନୁବାବୁ !

ଭାଇଗ—ହେଇ ମ୍ୟାନେଜର ବାବୁ ଆଇଲେଣି । ମୁଁ ଯାଉଚ ଆଜ୍ଞା । ( ପ୍ରସ୍ଥାନ )

ଭାନୁ—( ଭାବ ) No, No, impossible. ଯା ହୋଇ ପାରେନା, ପାରେନା······

ନର୍ମଳ—( ପ୍ରବେଶ ) ନମସ୍କାର ଭାନୁବାବୁ !

ଭାନୁ—( ନମସ୍କାର କର ) କେତେବେଳେ ଆସିଲେ ?

ନର୍ମଳ—ଏଇ ବର୍ତ୍ତମାନ ବଙ୍ଗଳାରୁ ଆପଣଙ୍କୁ ଖୋଜି ଖୋଜି ଏଠାକୁ ଆସିଲି ।

ଭାନୁ—ସେଠିକା ଖବର ?

ନର୍ମଳ—ସବୁ ଭଲ ।

ଭାନୁ—ଆଉ ଶ୍ରୀକାନ୍ତ ?

ନର୍ମଳ—ହଁ, ସେ ତ ଆଜି ଏଠାକୁ ଆସିବେ ।

ଭାନୁ—ଶ୍ରୀକାନ୍ତ ଏଠାକୁ ଆସିବ ?

ନର୍ମଳ—ହଁ ଆଜ୍ଞା ।

ଭାନୁ—ବଡ଼ ଆଶ୍ଚର୍ଯ୍ୟ କଥା ନିର୍ମଳବାବୁ । ଏଠି ଲୋକଙ୍କ ଭିତରେ ପ୍ରଚାର ହୋଇ ଯାଇଛି ଯେ, କାନ୍ତର ବାହାଘର ହୋଇଯାଇଛି ବୋଲି । ଏମିତି ଗୋଟାଏ ଖବର କେଉଁଠୁ ଉଠିଲା ମୁଁ ବୁଝିପାରୁନି ନିର୍ମଳବାବୁ !

ନିର୍ମଳ—ହଁ ଆଜ୍ଞା, ହୋଇଛି ତ !

ଭାନୁ—ହୋଇଛି ? କୋଉଦିନ ?

ନିର୍ମଳ—ଏଇ ଦିନଦିନ ତଳେ ।

ଭାନୁ—ଦିନଦିନ ତଳେ ଶ୍ରୀକାନ୍ତର ବାହାଘର ହୋଇଗଲା ?

ନିର୍ମଳ—ହଁ ଆଜ୍ଞା, କିଛି ନହେଲା । ମୁଁ ଏଠି ଆପଣଙ୍କୁ ଛାଡ଼ି ଭଉଣୀଙ୍କୁ ଫେରି ଶୁଣେ ଯେ, ହଠାତ୍ ଚାରିଦିନ ଭିତରେ ଯେ ବାହାଘର ଠିକ୍ ହୋଇ ଯାଇଛି ।

ଭାନୁ—ଚାରିଦିନ ଭିତରେ ?

ନିର୍ମଳ—ହଁ, ଶ୍ରୀକାନ୍ତବାବୁ ତ ମୂଳରୁ ବାହା ହେବାକୁ ରାଜି ନଥିଲେ । ହଠାତ୍ ଏମିତି ତାଙ୍କ ମତ ବଦଳିଗଲା···ଆଉ ଚାରିଦିନ ଭିତରେ ସବୁ ବ୍ୟବସ୍ଥା ହୋଇଗଲା ।

ଭାନୁ—ଆଚ୍ଛା ! ମୁଁ ଏଠି ଅଛି । ଅଥଚ ଶ୍ରୀକାନ୍ତର ବାହାଘର ହୋଇଗଲା । ( ଭାବି ) ଆଚ୍ଛା ନିର୍ମଳବାବୁ ! କେଉଁଠି କାହା ଘରେ ବାହାଘର ହେଲା ?

ନିର୍ମଳ ଅଳକାପୁର ମିଲ୍ ମାଲିକ ଶଶାଙ୍କ ପଟ୍ଟନାୟକଙ୍କ ଘରେ !!!

ଭାନୁ—ଶଶାଙ୍କ ପଟ୍ଟନାୟକଙ୍କ ଘରେ ଶ୍ରୀକାନ୍ତର ବାହାଘର ହୋଇଛି ?

ନିର୍ମଳ ହଁ, ତାଙ୍କର ଝିଅ ।

ଭାନୁ—ନିର୍ମଳବାବୁ !!!

ନିର୍ମଳ—କ'ଣ ହେଲା ଆଜ୍ଞା ?

ଭାନୁ—( ନିଜକୁ ସମ୍ଭାଳି ନେଇ ) ନା, ନା, କିଛି ନୁହେଁ । ଆପଣ ଯାଆନ୍ତୁ ।

ନିର୍ମଳ—ବ୍ୟସ୍ତ ହବାର କ'ଣ ଅଛି ଆଜ୍ଞା ? ବାବୁ ତ ନିଜେ ଏଠାକୁ ଆସୁଛନ୍ତି । ଆଉ ବଳେ ଆପଣଙ୍କୁ ସବୁ କହିବେନି ? ଆଚ୍ଛା, ଚାଲନ୍ତୁ ବଙ୍ଗଳାକୁ ଯିବେ ।

ଭାନୁ—ନା, ଆପଣ ଏକା ଯାଆନ୍ତୁ । ମୁଁ ପରେ ଯିବି ।

ନିର୍ମଳ—ଆଚ୍ଛା, ଶୀଘ୍ର ଆସିବେ । ସେଠି ତ ଫେରେ ଯାଇ ସବୁ ବ୍ୟବସ୍ଥା କରିବାକୁ ହେବ । ଶ୍ରୀକାନ୍ତବାବୁ ଆସିବେ କି ନା··· ( ଚାଲିଗଲେ )

ଭାନୁ—ଆସିବାକୁ ପଡ଼ିବନି ତାକୁ, ଆସିବାକୁ ପଡ଼ିବନି ।

— ଲାଇଟ୍ ଲିଭିଗଲା—

## ଷଷ୍ଠ ଦୃଶ୍ୟ

[ ଶ୍ରୀକାନ୍ତର କକ୍ଷ । ଯେଉଁଟା ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟରେ ଦେଖା ଯାଇଥିଲା । ସମସ୍ତ ଚନ୍ଦ୍ରପକ୍ଷର ରାତ୍ରି । ଝରକା ଦେଇ ଦେଖାଯାଏ ଚନ୍ଦ୍ର । ଘରଟିର ସାଜସଜ୍ଜାରୁ ମନେହୁଏ ବାସର ରାତ୍ରି । ଦୀପଟିଏ ପିଲସଜ ଉପରେ ଜଳୁଛି । ପାଖରେ ଥାଳୀରେ ଥିଆ ହୋଇଛି ଦୂବ, ଅରୁଆଚାଉଳ, ବରକୋଳି ପତ୍ର, ପୋଡ଼ା ନଡ଼ିଆ । ଖଟ ଉପରେ ଫୁଲର ଶେଯପଣୀ । କାନ୍ଥ ଉପରେ ଟଙ୍ଗା ହୋଇଛି ଶ୍ରୀକାନ୍ତର ଗୋଟିଏ ବଡ଼ ଫଟୋ ]

( ମାଳା ହିନ୍ଦୁ ବଂଶର ନବବିବାହିତା ବଧୂ । ଝରକାପାଖରେ ଠିଆ ହୋଇଛି, ଆତ୍ମହରା ନ ହୋଇ ଖୋଜୁଛି ଅନନ୍ତ ନୀଳ ଆକାଶକୁ ଚାହିଁ । )

ଶ୍ରୀକାନ୍ତ- ( ଧୋତି ପଞ୍ଜାବୀ ପିନ୍ଧି ସୁନ୍ଦର ଦେଖାଯାଉଛି, କପାଳରେ ଚନ୍ଦନରେ ଟିପା ଫୁଲମାଳା ଗଳାରେ; ପ୍ରବେଶ କଲା । ମାଳାର ଅଲକ୍ଷ୍ୟରେ ଆସି ଆରମ୍ଭ କଲା ) ଆକାଶର ଚନ୍ଦ୍ର ଧରଣୀର କଇଁ···ଦୁହିଙ୍କ ମଧ୍ୟରେ ଲକ୍ଷକୋଟୀ ଯୋଜନର ବ୍ୟବଧାନ । ତଥାପି ଚନ୍ଦ୍ରର ମଧୁ ଚନ୍ଦ୍ରିକା ଛୁଏଁ କଅଁଳ କଇଁର ନରମ ଓଠ । ଯୁଗ ଯୁଗାନ୍ତର କ୍ଷୁଧିତ ଦୁଇଟି ବିଦଗ୍ଧ ଆତ୍ମା, ଏଇ ଚନ୍ଦ୍ର ଆଉ କୁମୁଦ । ଦୂରତାର ପ୍ରାଚୀର କଣ ଏମାନଙ୍କୁ ଅଲଗା ରଖି ପାରିବ ମାଳା ?

ମାଳା— ( ନୀରବ ରହିଲା ଏବଂ ଶ୍ରୀକାନ୍ତକୁ ଚାହିଁଲା ଅବଗୁଣ୍ଠନ ଭିତରୁ )

ଶ୍ରୀକାନ୍ତ—( ଦୀପଟାକୁ ତେଜି ଦେଉ ଦେଉ ପୁଣି କହିଲା··· ) ନା ମାଳା ! ରାତ୍ରି ଉଜାଗରରେ ଜାଗର ଜାଳି ସେମାନେ ରଚନା କରନ୍ତି ଯୁଗ୍ମ ମିଳନର ମଧୁ ବାସର । ହେଲେ ତା'ର ଭିତରେ ହନେ ଦାଉ ସାଧେ

ଆକାଶର କାକକୃଷ୍ଣ ମେଘପଲ୍ଲ । ଚନ୍ଦ୍ର କୁମୁଦର ସ୍ୱପ୍ନ ଉଜୁଡ଼ା ମଧୁମୁହୂର୍ତ୍ତକୁ ବ୍ୟର୍ଥ କରି ସେ ସୃଷ୍ଟି କରେ ବ୍ୟବଧାନ । ଦୁଇଟି ଜୀବନରେ ଆଣେ ନଷ୍ଟ ଗ୍ରହର ଆହତ ପୂରବୀ ରାଗ, ହେଲେ ସେ ବେଶୀଦିନ ପାଇଁ ନୁହେଁ । ଉଚ୍ଛଳ ମୌସୁମୀର ଅଳସ ପ୍ରବାହରେ ଭାସିଯାଏ ଘନ ବାଦଲର ମସୀକୃଷ୍ଣ ଛାୟା । ପ୍ରକୃତିର ପରିହାସକୁ ପାଶୋରି ଦେଇ ପୁଣି ହସିଉଠନ୍ତି ଚନ୍ଦ୍ର ଆଉ କୁମୁଦ ।

ମାଳା—( ମାଳା ଶ୍ରୀକାନ୍ତ ପାଖକୁ ଆସି ପ୍ରଣାମ କରେ )

ଶ୍ରୀକାନ୍ତ—( ହାତଧରି ଉଠାଇ ମାଳାକୁ ) ମାଳା ! ଆଜିର ଏଇ ପବିତ୍ର ବାସରରେ କାହିଁକି ଆଖିରେ ତମର ଶିଶିର ସଜଳ ଅଶ୍ରୁବିନ୍ଦୁ । ଆଜିକାର ଏଇ ମଧୁବାସରକୁ ସାର୍ଥକ କରି ତୁମେ କ'ଣ ହସିବ ନି ?

ମାଳା—( ମାଳା ମୁହଁ ଘୂରାଇ ଫେରିଯାଏ ସେଇ ଝରକା ପାଖକୁ )

ଶ୍ରୀକାନ୍ତ—(ହସି) ଜାଣେ ମାଳା, ତମେ ହସି ପାରିବନି । ନା; ତୁମକୁ ଛନ୍ଦ ପାଗଳ କରି ହସେଇ ପାରନ୍ତା ଯୋଉ ଚନ୍ଦ୍ର, ସେ ଆଜି ତମଠୁ ଅନେକ ଦୂରରେ । ସେ ତମର ଅତି ପରିଚିତ ଝିରି ବଉଳ ତଳର, ଧୂଳିଘରର ସାଥୀ ଭାନୁଶଙ୍କର !!!

ମାଳା—( ଚମକି ଉଠେ । କ'ଣ କହିବାକୁ ଚାହେଁ ମାତ୍ର ପାରେନା )

ଶ୍ରୀକାନ୍ତ—ନବୀନ ଜୀବନ ଯାତ୍ରାପଥର ପ୍ରଥମ ସାକ୍ଷୀ ଏଇ କୁଳ ପ୍ରଦୀପକୁ ଛୁଇଁ ତମେ କ'ଣ ଅସ୍ୱୀକାର କରି ପାରିବ, ସେଇ ଝିରିବଉଳ ତଳର ଅପାଶୋରା ସ୍ମୃତିକୁ ତୁମେ ଭୁଲି ଯାଇଛ ? ଲୁଚାଇ ଦେଇଛ ??

ମାଳା—( ହାତ ବଢ଼ାଏ ମାତ୍ର ପାରେନି, ବିବେକ ଯେପରି ତାକୁ ବାଧାଦିଏ )

ଶ୍ରୀକାନ୍ତ—ନା, ନା ମାଳା, ତମେ ପାରିବନି !

ମାଳା—( କାନ୍ଦିଉଠେ ମାଳା ଖଟ ବାଡ଼ାକୁ ଧରି )

ଶ୍ରୀକାନ୍ତ—ପ୍ରୀତି ସୋହାଗର ପବିତ୍ର ମାଳା ତମେ ! ତମେ ଶୁଖି, ଝରି ଧୂଳିରେ ଲୋଟିବ, ତା' ମୁଁ ଦେଖି ପାରିବିନି ।

ମାଳା (କାନ୍ଦ୍, କାନ୍ଦ୍) କାନ୍ତବାବୁ ! ! !

ଶ୍ରୀକାନ୍ତ—ତମକୁ ମୁଁ ଝୁରିଯିବାକୁ ଦେବିନି ମାଳା, ମୋର ଖିଆଲି ଜୀବନର ଖାପଛଡ଼ା ଛନ୍ଦରେ ବନ୍ଦୀକରି ପାରିବିନି । କାରଣ ଏଠି ତମର ସ୍ଥାନ ନୁହେଁ ।

ମାଳା—ଏଠି ନୁହେଁ ! ନା, ନା, ଆପଣ ମୋତେ ଦୟା କରନ୍ତୁ କାନ୍ତବାବୁ, ଦୟା କରନ୍ତୁ ! ( କାନ୍ଦ କାନ୍ଦ ) ଏଠି ମତେ ଟିକିଏ ଆଶ୍ରୟ ଦିଅନ୍ତୁ ।

ଶ୍ରୀକାନ୍ତ ଏଠି ଯାହା ଦେଖୁଚ ସବୁ ଫାଙ୍କି, ମିଛ, କିଛୁ ଗୋଟାଏ ପ୍ରହେଳିକା । ଏଇ ଉତ୍ସବ, ଏଇ କୋଳାହଳ, ଏଇ ବାସର ଗୃହ, ଏଇ ଫୁଲଶେଯ, ଏଇ ସାହାନାଇର ଆଳାପ, ସବୁ ଗୋଟାଏ ଛଳନା, ଗୋଟାଏ ଅଭିନୟ ।

ମାଳା—( ଗୃହେଁ ଶ୍ରୀକାନ୍ତକୁ )

ଶ୍ରୀକାନ୍ତ—ଏ ଅଭିନୟ ମୋର ତମ ପାଇଁ ନୁହେଁ ମାଳା । ଏ ଅଭିନୟ ମୋର ସେଇମାନଙ୍କ ପାଇଁ—ଯେଉଁମାନେ ମନେ କରନ୍ତି ବିବାହ ଗୋଟାଏ ପଣ୍ୟ—ଯୋଉ ବାପା ମାଆମାନେ ଓ ସମାଜପତିମାନେ ମନେ କରନ୍ତି ଯେ, ତାଙ୍କର ଯତ୍ନପାଳିତା କନ୍ୟା ସେମାନଙ୍କ ହାତର ଗୋଟାଏ ଖେଳନା, ତା'ର ହୃଦୟ ନାହିଁ, ମନ ନାହିଁ, କିଛୁ ନାହିଁ । ସ୍ୱାଧୀନ ମନ ନେଇ ସେ କାହାକୁ ଭଲ ପାଇପାରିବ ନି । କାହା ପାଦତଳେ ନିଜକୁ ଲେଟେଇ ଦେଇ ପାରିବନି—ସେଇ ହୃଦୟହୀନ ବାପା ମା'ଙ୍କୁ, ସମାଜ-ପତିମାନଙ୍କୁ ଏ ଅଭିନୟ ମୋର ଗୋଟାଏ ଜବାବ ।

ମାଳା—କାନ୍ତବାବୁ !

ଶ୍ରୀକାନ୍ତ—ହଁ, ହଁ, ମୁଁ ସେମାନଙ୍କୁ ଜଣାଇ ଦେବାକୁ ଗୃହେଁ—ଟଙ୍କା ପଇସା ଖର୍ଚ୍ଚ କରି—ବେଦୀ ବାନ୍ଧି, ବ୍ରାହ୍ମଣ ଡାକି, ବନ୍ଧୁ ବାନ୍ଧବଙ୍କୁ ନିମନ୍ତ୍ରଣ କରି, ଗୁଡ଼ାଏ ଯାନ ଯୌତୁକ ଦେଇ ବେଦୀ ଉପରେ ଗୋଟିଏ ସରଳା ବାଳିକାର ଦେହମନକୁ ବଳି ଦେବାଟା ବିବାହ ନୁହେଁ···ସେ'ଟା ଗୋଟାଏ Homicide. ସେ ଗୋଟେ ନରହତ୍ୟା !

ମାଳା—କ'ଣ କହୁଯାଉଛନ୍ତି ଆପଣ ?

ଶ୍ରୀକାନ୍ତ—ହଁ ମାଳା, ଶ୍ରୀକାନ୍ତ ଜୀବନରେ ଏଇ "ଶ୍ରୀ" ଟା ହେଉଛି ଦୁନିଆ ଆଖିରେ ସବୁଠୁଁ ବଡ଼ ପ୍ରଲୋଭନ । ମୋ ପଛରେ ରହିଛି ଅଜସ୍ର Bank Balance ଆଉ ସମ୍ଭ୍ରାନ୍ତ ବଂଶର ଆଭିଜାତ୍ୟ । ମୋର ଏହି "ଶ୍ରୀ" ତମ ବାପାଙ୍କୁ ମୁଗ୍ଧ କରିଛି । ଫଳରେ "ଶ୍ରୀ" ସ୍ଥାନ ଭାନୁ ହେଉଛି ସର୍ବହରା—ହତଭାଗ୍ୟ—ଭାନୁର ଯଦି ସେତକ ଥାନ୍ତା, ତାହେଲେ ତମ ବାପାଙ୍କ ଆଖିରେ ମୁଁ ସତ୍ପାତ୍ର ହୋଇ ନଥାନ୍ତି ମାଳ !

ମାଳା—ମୋର ତା'ହେଲେ କଣ ହେବ କାନ୍ତବାବୁ ? ମୋର ସବୁ ଯାଇଛି—, ଆପଣ କିନ୍ତୁ ମୋତେ ବଂଚିତ କରନ୍ତୁ ନାହିଁ···ମୋତେ ଦୂରକୁ ଠେଲି ଦିଅନ୍ତୁନି ।

ଶ୍ରୀକାନ୍ତ—ଦୂରକୁ ମୁଁ ଠେଲି ଦେବିନି ମାଳା···ମୁଁ ତୁମକୁ ଧୂଳିରେ ଲୋଟିବାକୁ ଦେବି ନାହିଁ । ତମକୁ ମୁଁ ତୋଳିଦେବି ଭାନୁର ଗଳାରେ···

ମାଳା—କିନ୍ତୁ ଏ ଘରର ପରିଚୟ । ···ଆଜି ଏଇ···ଘରେ···

ଶ୍ରୀକାନ୍ତ—ହଁ ହଁ, ଏଇ ଘରେ ବଧୂ ବେଶରେ ତୁମେ, ହେଲେ ତା ହୋଇ ପାରିବନି ମାଳା···ଏଇଠୁ ଏଇ ଘରେ ତମର ହେବ ନୂତନ ପରିଚୟ······

ମାଳା—ପରିଚୟ ।

ଶ୍ରୀକାନ୍ତ—ହଁ, ତମେ ଏଇ ଘରର ବଧୂ ନୁହଁ । ଝିଅଟିଏ ଶ୍ରୀକାନ୍ତର ଅତି ଆପଣାର ଶ୍ରେଷ୍ଠ ଭଉଣୀ···

ମାଳା—ଶ୍ରୀକାନ୍ତ ବାବୁ ! ( ଲୋଟି ପଡ଼ିଲା ପାଦତଳେ )

ଶ୍ରୀକାନ୍ତ—( ମାଳାକୁ ଉଠାଇ ) ତୋ ସ୍ଥାନ ସେଠି ନୁହେଁ ମାଳା, ତୋ ସ୍ଥାନ ମୋର ଏହି ସ୍ନେହ ସଜଳ ବକ୍ଷ ଉପରେ । ବିବାହ ବେଦୀ ଉପରେ ଆମର ହାତଗଣ୍ଠି ପଡ଼ିନାହିଁ ମାଳା—ସେଇଠି ମୋର କୋଉ ଜନ୍ମର ରକ୍ତର ଭଉଣୀ ସାଙ୍ଗରେ ହୋଇଛି ଗ୍ରନ୍ଥି ବନ୍ଧନ । ମୋ ଭଉଣୀକୁ ମୁଁ ବଳି-କାଠରୁ

ମୁକୁଳେଇ ଆଣିଛୁ—ବଞ୍ଚେଇ ପାରିଛୁ । ଏଇ ମୋର ଗୌରବ—ଏଇ ମୋର ଆନନ୍ଦ···ଏଇ ମୋର ସାର୍ଥକତା ।

ମାଳା କିନ୍ତୁ ଏ ପରିଚୟ ? ସ୍ୟାଙ୍କୁ କ'ଣ ଦୁନିଆ ସ୍ୱୀକାର କରିବ ? ସମାଜ କ'ଣ ସ୍ୟା'ଙ୍କୁ ସ୍ୱାଗତ କରିବ ?

ଶ୍ରୀକାନ୍ତ – ସମାଜ ! ସେ ସମାଜର ସ୍ୱୀକୃତି ମୋର ଲୋଡ଼ା ନାହିଁ ମାଳା—ଦୁନିଆରେ କେହି ସ୍ୱୀକାର ନକରୁ ପଛକେ—ଭାନୁ ତ ଅସ୍ୱୀକାର କରି ପାରିବନି— ମୋର ସେତିକି ଦରକାର ମାଳା—ଆଉ ତା'ରି ପାଇଁ ଏ କେବଳ ମୋର ଚରମ ଅଭିନୟ ।

ମାଳା—କାନ୍ତ ଭାଇ !

ଶ୍ରୀକାନ୍ତ—ଯା ମାଳା, ଭାନୁ ତେଣେ ତୋତେ ତୋର ପ୍ରତୀକ୍ଷାରେ ରହିଥିବ ।

ମାଳା—ଭାଇ !

ଶ୍ରୀକାନ୍ତ ରାମପୁର ବଙ୍ଗଳାରେ ଅପେକ୍ଷା କରିଛୁ ସେ···ଏଇ ରାତିରେ ଆମକୁ ଯିବାକୁ ହେବ ମାଳା, ତାକୁ କଥା ଦେଇ ଆସିଛୁ, ତୁ ଶୀଘ୍ର ପ୍ରସ୍ତୁତ ହୋଇପଡ଼ ମାଳା । ଯା, ଡେରି ହେଲେ ସେ ଭାବିବ କ'ଣ ?

( ମାଳାକୁ ବାହାରେ ଛାଡ଼ି ଆସି ନିଜେ ପ୍ରସ୍ତୁତ ହେବାକୁ ଲାଗିଲା । ଭାନୁ ଏତିକିବେଳେ ଆସିଛୁ ଠିକ୍ ଉଦଭ୍ରାନ୍ତ ପରି )

ଶ୍ରୀକାନ୍ତ—କିଏ ??

ଭାନୁ—ଚିହ୍ନି ପାରୁନୁ ? ( ହସି ହଁ, ଚିହ୍ନିବୁ କେମିତି ? ଆଜି ତ ଆଉ ସେଦିନର ଶ୍ରୀକାନ୍ତ ନୁହଁ, ଯେ Bachelor ଜୀବନର ନିଜକୁ ହଜେଇ ଦେଇ ଦୁନିଆର ସବୁ କିଛି ଭୁଲି ଯାଇଥିଲୁ—ତୁ ତ ଆଜି ଆଉ ଶ୍ରୀକାନ୍ତ ନୁହଁ···

ଶ୍ରୀକାନ୍ତ—ଭାନୁ ! ଏମିତି ଅଧରାତିରେ ତୁ ? ?

ଭାନୁ ଅଧ ରାତିରେ ଚୋରପରି ଛପି ଛପି ଆସିଛୁ । ଆଉ ଆଜିପରି ଦିନରେ ଏମିତି ଆସିବାଟାକୁ ତୁ ପସନ୍ଦ କରୁନୁ ବୋଧହୁଏ ?

ଶ୍ରୀକାନ୍ତ – ଆରେ, ଏସବୁ ପାଗଳଙ୍କ ପରି କଣ କହୁଛୁ ତୁ ? ଆ, ବସ !

ଭାନୁ—ପାଗଳ, ହଁ ପାଗଳ, ମୁଁ ପାଗଳ ହୋଇଚି; କିନ୍ତୁ କାହିଁକି ? କାହିଁକି ପାଗଳ ହୋଇଛୁ ? କିଏ ମତେ ପାଗଳ କରିଛୁ ?

ଶ୍ରୀକାନ୍ତ—ଭାନୁ !

ଭାନୁ—ମତେ ପାଗଳ କରନ୍ତୁ ତୁ ।

ଶ୍ରୀକାନ୍ତ—ମୁଁ ?

ଭାନୁ—ହଁ, ତୁ ମତେ ପାଗଳ କରୁଛୁ, ତୋ ବିଶ୍ୱାସଘାତକତା ପାଗଳ କରୁଛି ।

ଶ୍ରୀକାନ୍ତ—କଣ ଏସବୁ କହୁଛୁ ତୁ ଭାନୁ ?

ଭାନୁ—ଦିନର ଆଲୋକରେ ବନ୍ଧୁତାର ଶପଥ ନେଇ ରାତିର ଅନ୍ଧକାରରେ ଯେଉଁମାନେ ଗଳାରେ ଛୁରି ଚଳାଇ ପାରନ୍ତି, ସେଇମାନେହିଁ ମତେ ପାଗଳ କରି ଦେଇଛନ୍ତି । ସେଇଥିପାଇଁ ମୋ ଜୀବନର ସବୁ ଆଶା, ସବୁ ସ୍ୱପ୍ନ, ସବୁ କାମନାକୁ ଜଳାଞ୍ଜଳି ଦେଇ ଏଇ ଅମାବାସ୍ୟାର ନିବିଡ଼ ଅନ୍ଧକାର ଭିତରେ ଖୋଜି ବୁଲୁଛି ସେଇ ବିଶ୍ୱାସଘାତକ ଶ୍ରୀକାନ୍ତକୁ ।

ଶ୍ରୀକାନ୍ତ—ତୁ ଭୁଲ ଶୁଣିଛୁ ଭାନୁ ! ତୁ ଟିକିଏ ଶାନ୍ତ ହ ।

ଭାନୁ—ଶାନ୍ତ ହେବ ( ହସି ) ଶାନ୍ତ ହେବ । ଅମାବାସ୍ୟାର ନିବିଡ଼ ଅନ୍ଧକାରରେ ସମୁଦ୍ର ଉପରେ ଅଶାନ୍ତ ହୋଇଉଠେ ଜାଣିଛୁ ଶ୍ରୀକାନ୍ତ ।

ଶ୍ରୀକାନ୍ତ— ଭାନୁ, ଭାନୁ !

ଭାନୁ—ଭାନୁ ଭାନୁ ଡାକି ମୋ ମନଟାକୁ ଆଉ ଚହଲାଇ ଦେଏନା—ସବୁ ମତେ ଭୁଲିବାକୁ ଦେ···ଶ୍ରୀକାନ୍ତ ବୋଲି ମୋର କେହି ଜଣେ ବନ୍ଧୁ ଥିଲା—ମତେ ଆଶ୍ରୟ ଦେଇଥିଲା—ଆଶା ଦେଇଥିଲା- ଭରସା ଦେଇଥିଲା—ଆଉ ତାପରେ···ବିଶ୍ୱାସଘାତକ, ନୀଚ, ଦସ୍ୟୁ, ଜଘନ୍ୟ ଭାବରେ ଲୁଣ୍ଠନ କଲା ···ଅପହରଣ କଲା ମୋର ମନର ମାଳାକୁ ।

ଶ୍ରୀକାନ୍ତ—ତୁ ଭୁଲ୍ ଶୁଣିଛୁ ଭାନୁ !

ଭାନୁ—ଭୁଲ୍ ଶୁଣିଛି ? ଆଜି ଆଖି ଆଗରେ ଏଇ ମଧୁଶଯ୍ୟା ରାତିର ବିପୁଳ ଆୟୋଜନ ! ମୋର ଭୁଲ୍ ଠିକ୍‌ର ଚରମ ନିଷ୍ପତ୍ତି କରି ସାରିଚି ଶ୍ରୀକାନ୍ତ ଏଇ ଘର—ଏଇ ଶଯ୍ୟା···ଏଇ ଉତ୍ସବ । ସେ ସବୁକୁ ତୁ କଣ ଅସ୍ୱୀକାର କରି ପାରିବୁ ଶ୍ରୀକାନ୍ତ ।

ଶ୍ରୀକାନ୍ତ—ଭାନୁ !

ଭାନୁ— ମତେ ଭୁଲେଇ ଦେବାର ଅପଚେଷ୍ଟା କରନା ଶ୍ରୀକାନ୍ତ—ମୁଁ ଶିଶୁ ନୁହେଁ ···ଏତେ ସହଜରେ ମୋ ଆଖିକୁ ତୁ ଫାଙ୍କି ଦେଇ ପାରିବୁନ ।

ଶ୍ରୀକାନ୍ତ—ଫାଙ୍କି ଦେବ । ସେ ଚେଷ୍ଟା ମୁଁ କାହିଁକି କରିବ ?

ଭାନୁ—ସେ ଚେଷ୍ଟା ତୁ କରିନୁ । ତୁ ଏକଥା କହି ପାରୁନୁ ଶ୍ରୀକାନ୍ତ । ଆଶା ଦେଇ, ଭରସା ଦେଇ, ନିର୍ଭର ଜବାବ ଦେଇ ମତେ ଦୂରକୁ ପଠାଇ ଦେଇଥିଲୁ କାହିଁକି ? କାହିଁକି ତୁ ଚାହିଁଥିଲୁ ତୋ ଜୀବନର ଏଇ ଫଗୁ ଉତ୍ସବରେ ଜଣେ ଅନ୍ତରଙ୍ଗ ବନ୍ଧୁକୁ ଦୂରେଇ ରଖିବାକୁ ? କାହିଁକି ? ଦେ, ଜବାବ ଦେ ?

ଶ୍ରୀକାନ୍ତ—ମତେ ଭୁଲ ବୁଝନା ଭାନୁ······

ଭାନୁ—( କିଛି ନ ଶୁଣି ) ସବୁ ଭୁଲ ଠିକ୍‌ର ସମାଧାନ କରିବାକୁ ମୁଁ ଆଜ ଆସିଛି ଶ୍ରୀକାନ୍ତ । ମୁଁ ଆସିଛି ତୋର ଆଜର ଏଇ ପବିତ୍ର ବାସରରେ ଉପହାର ଦେବାକୁ···( ପିସ୍ତଲ ଆଓ୍ୟାଜ, କାନ୍ତ ମରି ପଡ଼େ )

ମାଳା—କାନ୍ତ ଭାଇ ! କାନ୍ତ ଭାଇ !! ଏ କଣ କଲ ତମେ, ଏ କ'ଣ କଲ ? କାହିଁକି ? କାହିଁକି ଆସିଛ ତମେ ? ବାହାରି ଯାଅ, ବାହାରି ଯାଅ ଏଠୁ ।

ଭାନୁ—( ନିର୍ବାକ ହୋଇ ଠିଆ ହୋଇଥାଏ )

ମାଳା—କାହିଁକି ଠିଆ ହୋଇଛ । କ'ଣ ଦେଖିବାକୁ ଠିଆ ହୋଇଛ ?? ( କାନ୍ଦି କାନ୍ଦି ) କାହିଁକି ମୋର ଏମିତି ସର୍ବନାଶ କଲ ତମେ । ଏଇଥି ପାଇଁ ଭଲ ପାଇଥିଲ ? ଏଇ ବେଶ ଦେଖିବାକୁ ? ( କାଚ ସବୁକୁ ପିଟି ଦିଏ ଚଟାଣ ଉପରେ, ସିନ୍ଦୂର ପୋଛି ଦିଏ ) ଦେଖ ! ଏଥର ମୋତେ କୋଉ ଦିନ ଦେଖି ପାରିବ । ଦେଇ ପାରିବ ବଧୂର ସମ୍ମାନ ।

( କାନ୍ଦି କାନ୍ଦି ଶ୍ରୀକାନ୍ତ ଉପରେ ପଡ଼ି ଯାଇଛି ମାଳା )

ଭାନୁ—( ଶ୍ରୀକାନ୍ତର ଶବକୁ ସ୍ପର୍ଶ କରି ) ମୁଁ ମୋ ଜୀବନ ବିନିମୟରେ ଏହାର ପ୍ରାୟଶ୍ଚିତ୍ତ କରିବ ଶ୍ରୀକାନ୍ତ—ମୁଁ ପ୍ରାୟଶ୍ଚିତ୍ତ କରିବ ।

( ଆଲୁଅ ଆସ୍ତେ ଆସ୍ତେ···ମାଳାର କାନ୍ଦ କ୍ରମଶଃ ବଢ଼ି ଯାଏ )

—ଯବନିକା ନଇଁଆସେ—



# ଗୀତ

—ପ୍ରଥମ ଅଙ୍କ—

୨ୟ ଦୃଶ୍ୟ

ମନେ କି ପଡ଼ଇ ନାହିଁ ଆମ ବାଲ୍ୟ କାଳ ଲୋ···
ମନେ କି ପଡ଼େନା ଗଛ ଛାଇ ତଳ ଲୋ···
ତୋର ମୋର, ସେଇ କଣ୍ଢେଇ ଖେଳ ଲୋ । ( ପଦ )

ମୁଁ ହୁଏ ସମୁଦୀ; ତୁ ସମୁଦୁଣୀ
କେତେ ହସ ଖୁସି, କାନ୍ଦ ଝଣାଝଣି
ମନେ କି ପଡ଼େନା ମୋ ଝିଅ ତୋ ପୁଅ
ବାହା ବେଳର ସେ ଗୋଳ ଚହଳ ଲୋ । ( ୧ )

କେତେବେଳେ ଅବା ମୁଁ ବର ତୁ ବୋହୂ
ଓଢ଼ଣା ଟାଣି ମୋ ପାଖେ ବସିଥାଉ
ମନେ କି ପଡ଼େନା ମିଛୁ ମିଛିକା ସେ
ହାତଗଣ୍ଠି ପକା ଲାଜର ବେଳ ଲୋ ( ୨ )

କେତେ କେତେ କଥା ଭାବିଥିଲି ମନେ
ତୋତେ ନେଇ ଘର କରିବି ଜୀବନେ
କେତେ ଦୂରେ ତୁ, ଏବେ ବି ଝୁରୁଛି
ସାଥି ଏକା ମୋର ଝୁରା ବଉଳ ଲୋ । ( ୩ )

ପ୍ରଥମ ଅଙ୍କ--

୩ୟ ଦୃଶ୍ୟ

ଏଢ଼େ ନଟକୁଟିଆ ତୁମେ
ନନ୍ଦକିଶୋର କହ୍ନାଇ···
ହଟାହଟା କରି ରାଇ କିଶୋରୀଙ୍କି
ବାଟ ମଝିଟାରେ ନାଟ ଲଗାଇ । ( ୦ )

ଦେଇଛୁ ସେ ଚିତ୍ତ ହଜାଇ
ତୁମ ତୁଲେ ଆସିଛୁ ଧାଇଁ···
ଚିତ୍ତଚୋର ତୁମେ, ହେ ନଟ ନାଗର
କି ସୁଖ ପାଉଛ ତାଙ୍କୁ କନ୍ଦାଇ । ( ୧ )

ଝଁଶଲଣି କେତେ ବେଳ···
ଆଉ ଏବେ ତୁମ ସେ ଖେଳ
କେତେ କାଳ ଆଉ ମଜା ଦେଖୁଥିବ
ରାଇର ନୟନୁ ଲୁହ ଝରାଇ ( ୨ )

ଛନ୍ଦ ଛାଡ଼ି ଛନ୍ଦାଚରଣ
କର ଏବେ ମାନଭଞ୍ଜନ
ଦୀନ ଭଗବାନ କରେ ନିବେଦନ
ରାଧାମୁଖେ ଦିଅ ହସ ଫେରାଇ ( ୩ )

— ଶ୍ରୀ ଭଗବାନ ନାୟକ ବର୍ମା

—ପ୍ରଥମ ଅଙ୍କ—

୫ମ ଦୃଶ୍ୟ

ହାତୀ ଝୁଲି ଝୁଲି ଅଇଲା ବନ
ହାତୀ ଖାଇଗଲା ପାଚିଲା ପାନ
ଝୁଲୁ ଝୁଲୁ ଝୁଲୁ, ବାଆପାଣି ଖାଇ ଫୁଲ୍
ପାଣଧିରେ ଯାଇ ବନସ୍ତ ମଝିରେ ରଜା କଲେ ପଥଭୁଲ (୦)

ଘୋର ଅନ୍ଧାରରେ ଘୋର ବରଷା
ଏକାଲେ ବନସ୍ତେ ଘୋଟିଲା ନିଶା
କାହିଁ କଣ୍ଟୁଆଳ ସେ ପଦାଢଳ
କାହିଁ ଗଲେ କା'ର ନ ମିଳେ ଭେଟ
ପଥଛୁଡ଼ି ଗଲେ ବଢ଼ି, ମହାରଜା ଘୋଡ଼ା ଚଢ଼ି
ଏକାଲେ ପାହାନ୍ତ୍ର ଦେଲା ଯେ ଦେଖା
ହାତୀ ଆସୁଥିଲା ଝୁଲି ଝୁଲିକା
ରଜାଙ୍କୁ ପିଠିରେ ବସାଇ ଅଧୀରେ ହାତୀ ଗଲେ ଝୁଲ୍ ଝୁଲ୍ (୧)

—ମନୋଜ ଦାସ



